# ଜନ୍ମ

ଲେଖକ—ଶ୍ରୀଗଣେଶ୍ୱର ମିଶ୍ର

ପ୍ରଥମ ସଂସ୍କରଣ

- ପ୍ରକାଶକ -




*Price One Rupee*     ମୂଲ୍ୟ ଟ ୧୯ ମାତ୍ର

# ଉତ୍ସର୍ଗ ପତ୍ର

ସ୍ନେହର ପୁତ୍ରବଧୂ ପଦ୍ମା !

ଜମ୍ମୁ ବହିଟି ଯେତେବେଳେ ଲେଖା ଚାଲିଥିଲା, ପ୍ରତିଦିନ କଣ ଲେଖା ହେଉଛି ତାହା ତୁ ଅତି ଆଗ୍ରହ ସହକାରେ ପଢ଼ୁଥିଲୁ, ତୋର ଆଗ୍ରହ ଓ ଉତ୍ସାହ ଲେଖାଟିକୁ ପୂର୍ଣ୍ଣାଙ୍ଗ କରିବା ଦିଗରେ ମୋତେ କମ୍ ପ୍ରେରଣା ଦେଇ ନ ଥିଲା ।

ପାଣ୍ଡୁଲିପିଟି ଲେଖା ସରି ଆଜି ପୁସ୍ତକାକାରରେ ପ୍ରକାଶିତ ହେବାକୁ ଯାଉଛି, ମାତ୍ର ତୋ ହାତରେ 'ଜମ୍ମୁ'କୁ ଅର୍ପଣ କରି ତୋ ମୁହଁରେ ହସ ଦେଖିବା ମୋ ଭାଗ୍ୟରେ ହେଲା ନାହିଁ । ତା ପୂର୍ବରୁ ତୁ ଆମ୍ଭମାନଙ୍କ ସ୍ନେହର ବନ୍ଧନ ତୁଟାଇ ଇହଧାମ ତ୍ୟାଗ କରିଛୁ । ତେଣୁ ତୋର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଏ ପୁସ୍ତକଟି ଉତ୍ସର୍ଗ କରୁଛି । ଇତି ।

ତୋର
ନନା

# ମୁଖବନ୍ଧ

'ଜମ୍ମୁ' ନାମକ ବିଷୟଟି ସମ୍ପୂର୍ଣ୍ଣ ନୂଆ ପର ଶୁଣାଯାଇ ଥିଲେହେଁ ଏହା ଯଥାର୍ଥରେ ନୂଆ ନୁହେଁ । ଆମ ଦେଶରେ ଯେଉଁ-ମାନେ ସିନେମା ଚଳଚ୍ଚିତ୍ରରେ ଅଭିନୟ ଦେଖିବାକୁ ସୁବିଧା ପାଆନ୍ତି, ସେମାନେ ଘଟଣାକ୍ରମେ ଜମ୍ମୁ ଅଭିନୟ କୌଣସି ନା କୌଣସି ସିନେମାରେ ଅବଶ୍ୟ ଦେଖିପାରିଥିବେ । ଲେଖକ ସେହିପରି ଗୋଟିଏ ସିନେମାରେ ଜମ୍ମୁର ଅଭିନୟ ଦେଖି ଏବଂ ସେଥିର ଲୋମାଞ୍ଚକର ଦୃଶ୍ୟାବଳୀରେ ଏକାନ୍ତ ମୁଗ୍ଧ ହୋଇ ଏହି ଗଳ୍ପଟି ଲେଖିଅଛି । ଏଥିରେ ଅବଲମ୍ବିତ କଥାବସ୍ତୁ କେତେଦୂର ସତ୍ୟ-ମୂଳକ, ତାହା କହିବାର ଅଧିକାର ଲେଖକର ନାହିଁ । ମୌଳିକ ବିଷୟ ଏଥିରେ ସମ୍ପୂର୍ଣ୍ଣରୂପେ ଅନୁସୃତ ହୋଇଥିଲେହେଁ କଥାବସ୍ତୁକୁ ସତ୍ୟଯାଏ ଓ ଚିତ୍ତାକର୍ଷକ କରିବା ଲାଗି ଏଥିରେ କଳ୍ପନାର ଅଶ୍ରୟ ଯଥେଷ୍ଟ ନିଆଯାଇଅଛି ଏବଂ ସେଥିପାଇଁ ମୂଳ ଘଟଣାକୁ ଯଥାସମ୍ଭବ ପରିବର୍ତ୍ତିତ ଓ ପରିବର୍ଦ୍ଧିତ କରି ଯାଇଅଛି । ଯୁବକ ଯୁବତୀ ଓ ବାଳକ ବାଳିକାମାନଙ୍କର ସୁଖପାଠ୍ୟ ହେବାଲାଗି ଏଥିରେ ଅବଶ୍ୟକୀୟ ଚେଷ୍ଟା ହୋଇଅଛି ବୋଲି ବିଶ୍ୱାସ । ସୁତରାଂ 'ଜମ୍ମୁ' ସେମାନଙ୍କର ଆନନ୍ଦବର୍ଦ୍ଧନ କରିପାରିଲେ ସମସ୍ତ ପରିଶ୍ରମ ସଫଳ ହେବ । ଇତି ।

ତା ୧୩।୧।୪୭ **ଲେଖକ**

**ଅଠଗଡ଼**

# ଜମ୍ମୁ

—ଏକ—

ମାନ୍ଦ୍ରାଜର ଜଣେ ଜମିଦାର ଥରେ ତୀର୍ଥ ଦର୍ଶନ କରିବାକୁ ବାହାରିଥିଲେ । ତାଙ୍କ ସାଙ୍ଗରେ ତାଙ୍କ ସ୍ତ୍ରୀ, ପୁଅଝିଅ, ନାତିନାତୁଣୀ ଓ ଗୃହର ଭୃତ୍ୟବର୍ଗୀ ବହୁତ ଥିଲେ । ସେ ସମୟରେ ଆମ ଦେଶରେ ରେଳ ବେଶି ଚାଲୁ ନ ଥିଲା । ନୂଆ ହୋଇ ଠାଏ ଠାଏ ଆରମ୍ଭ ହୋଇଥାଏ । ଜମିଦାର ସମସ୍ତଙ୍କୁ ଛଅଗୋଟି ଲଣ୍ଡି ଗାଡ଼ିରେ ଧରି ଚାଲୁଥିଲେ । ଦଶବାରଦିନ ଭଲ ଭାବରେ ଗାଁକୁ ଗାଁ ପାରହୋଇ ଏଗାର ଦିନ ମଧ୍ୟପ୍ରଦେଶର ଘୋରାରଣ୍ୟ ଭିତରେ ପଶିଲେ । ସେ ବଣ ଅତି ଭୟାନକ, ତା ଭିତରେ ମାସେ କାଳ ଚାଲିଲେ ବି ବଣ ସରେ ନାହିଁ । ତା ଭିତରେ ବାଘ, ସିଂହ, ଭାଲୁ, ହାତୀ, ଭେନ୍ଦୁଆ, ଚିତାବାଘ, ଗଣ୍ଡା, ଗଅଳ, ଘୋଡ଼ଙ୍ଗ ପ୍ରଭୃତି ଭୀଷଣ ପଶୁମାନେ ଓ ଅହିରାଜ, ଚୋଡ଼ା, ଗୋଖର, ଶଙ୍ଖାମୁଠିଆ ପ୍ରଭୃତି ସାପମାନେ

ଖବ ଖବ ଥାଅନ୍ତି । ତା ସାଙ୍ଗକୁ ପୁଣି ବଣୁଆ ଜନ୍ତୁଙ୍କ ଭୟ ବହୁତ ବେଶି । ଏପରି ବଣଭିତରେ ଲୋକମାନେ ସ୍ବାର ଭୟରେ ଯାଆନ୍ତି । କେତେ ଯେ ପ୍ରାଣ ହରାନ୍ତି ତାର ସୀମା ନାହିଁ । ତେଣୁ ଏ ବଣ ଭିତରେ ନାରପଦରେ ଯାଇ ତୀର୍ଥ କରିବା ସହଜ କଥା ନୁହେ ।

ଜମିଦାର ବହୁତ ସାବଧାନରେ ନିଜର ଗାଈ ଗୁଡ଼ିକ ଧରି ସେ ବଣଭିତରେ ଅଠଦିନ ଯାଏ କୌଣସି ମତେ ଗୃଲିଲେ । ନଅ ଦିନ ଗୁଡ଼ାଏ ମହାବଳ ବାଘ ଅସି ସେମାନଙ୍କୁ ଘେରିଲେ । ଜମିଦାରଙ୍କ ସାଙ୍ଗରେ ବନ୍ଧୁକଧାରୀ ସିପେଇମାନେ ଥିଲେ । ସେମାନେ ବନ୍ଧୁକ ଅବାଜରେ ବାଘମାନଙ୍କୁ ଘଉଡ଼େଇ ଦେଲେ । ମାତ୍ର ବାଘମାନେ ମଣିଷ ବାସନା ପାଇଥିଲେ, ସେମାନେ କି ସହଜରେ ଘୁଞ୍ଚନ୍ତି ? ସେମାନେ ଗାଈ ସାଙ୍ଗେ ସାଙ୍ଗେ ବଣ ଭିତରେ ଲୁଚି ଲୁଚି ଗୃଲିଲେ । ସେ ଦିନ ରାତିରେ ଅଜଗର ସାପ ଅସି ଦୁଇ ଜଣ ସୀପାହିଙ୍କୁ ଗିଳିଦେଲା । ବାଘମାନେ ଧେର କେତେକ ଗୃକର ଗୃକରାଣୀଙ୍କି ମାରି ନେଇଗଲେ । ଜମିଦାର ଭୟରେ କରତାଜ ପରି ଥରିଲେ । ଅଉ ସେ ଜାଗାରେ ରହିବା ଭଲ ମନେ ନକରି ସମସ୍ତେ ସେହି ଅନ୍ଧାର ରାତିରେ ମଶାଲ ଜାଳି ପୁଣି ଗୃଲିବାକୁ ଲାଗିଲେ । ଅଉ ଖଣ୍ଡେ ବାଟ ଗଲା ପରେ ଦଳେ ବଣୁଆ ହାତୀ ଅସି ସେମାନଙ୍କୁ ଘେରିଲେ । ଜମିଦାର ଭାବିଲେ, ଅଉ ରକ୍ଷା ନାହିଁ । ତଥାପି ବନ୍ଧୁକ ଫୁଟାଇ ଅନେକ ଚେଷ୍ଟା କଲେ । ମାତ୍ର ହାତୀମାନେ କୋଉଁଏ ଚଣ୍ଡେଯାଏ ତାଙ୍କୁ ଘୁଙ୍ଗି ଗୁଣ୍ଡାକରି ଦେଲେ । ବଳଦମାନେ ପଘା ଛିଣ୍ଡେଇ ଏଣେ ତେଣେ ପଳେଇ

ଗଲେ । ବାଘମାନେ ଦଣ୍ଡକଭିତରେ ସେମାନଙ୍କୁ ଟାଣି ଖାଇଗଲେ । ଅଲ୍ପ ଯେ ଦଶଖଣ୍ଡ ଗାଡ଼ି ରହିଲା, ତାକୁ ଅଢେଇ ଜମିଦାର ସିପାହିଙ୍କୁ ଘେରି ପକାଇ ଗଲେ । ଘୁହୁଁ ଘୁହୁଁ ସକାଳ ହୋଇଗଲା । ଜମିଦାର ଗୋଠାଏ ନାଳକୂଳରେ ବିଶ୍ରାମ କରି ଖିଆପିଆ କଲେ ଏବଂ ଦ୍ୱିପ୍ରହର ସମୟରେ ପୁଣି ଯାତ୍ରା କଲେ । ଅଳ୍ପ ବାଟ ନ ଯାଉଣୁ ଦଳେ ଡକେଇତ ସେଠାରେ ପହଞ୍ଚି ଦୂରରୁ ଶରବୃଷ୍ଟି କଲେ । ତହିଁରେ ଅନେକ ଲୋକ ମଲେ । ସିପାହିମାନେ ବନ୍ଧୁକ ଛୁଟାଇଲେ, ମାତ୍ର ଡକେଇତ ଦଳ ବେଶୀ ଥିବାରୁ ସେମାନଙ୍କ ଶରମାଡ଼ରେ ସିପେଇମାନେ ଅଳ୍ପ ସମୟ ଭିତରେ ମରି ଶୋଇଲେ । ତହୁଁ ଗୁହୁଁ ଡକେଇତମାନେ ଆସି ଜମିଦାରଙ୍କ ପିଲାପିଲିଙ୍କ ଉପରେ ଝାମ୍ପି ପଡ଼ିଲେ । କାହାକୁ ଛୁରୀରେ, କାହାକୁ ଶରରେ ମାରି ଶୁଆଇ ଦେଲେ । ଜମିଦାର ସବଂଶେ ନିପାତ ହେଲେ । ତାଙ୍କର ଗୋଟିଏ ନବର୍ଷର ନାତି ଭୟରେ ଲୁଚି ଲୁଚି କୁଆଡ଼େ ପଳେଇଗଲା । ଡକେ-ଇତମାନେ ଜମିଦାରଙ୍କର ସର୍ବସ୍ୱ ଲୁଟି କରି ନେଇଗଲେ । ଜଣେ ଢକଣ ଗୁହର ଖସି ଯାଇ ଦିନା କେତେ ପରେ ନିରାପଦରେ ନିଜ ଗାଁରେ ପହଞ୍ଚି ଏକଥା ସମସ୍ତଙ୍କୁ ଜଣେଇଲେ । ଲୋକ ମୁହଁରେ ଏ କଥା ଚାରିଆଡ଼େ ପ୍ରଚାରିତ ହେଲା ଓ ଖବରକାଗଜମାନଙ୍କରେ ବାହାରିଲା । ଲୋକେ ଜାଣିଲେ ଯେ ଜମିଦାରଙ୍କର ବଂଶ ବୁଡ଼ିଲା । ତାଙ୍କର ଯେଉଁ ନାତିଟି ଖସି ପଳେଇଥିଲା, ସେ ଘୋର ବନସ୍ତ ଭିତରେ ମଲା କି ଜିଇଁଲା ତା ଖବର କେହି ଜାଣିଲେ ନାହିଁ । ସେ ଦିନୁ ସେ କଣବାଟ ଏକବାରେ ବନ୍ଦ ହୋଇଗଲା । ସେ କଣ ନାଁ ଶୁଣିଲେ ଲୋକେ ଭୟରେ ଥରି ଯାଉଥିଲେ ।



—ଦୁଇ—

ଯେଉଁ ଜନାବର୍ଷର ପିଲଟି ବଣ ଭିତରେ ଲୁଚି ପଳେଇ-ଥିଲା, ତା ନାଁ ଜମ୍ବୁ । ସେ ଭୟରେ ଏତେ ଡରି ଯାଇଥିଲା ଯେ ସେ କୁଆଡ଼କୁ ନ ଚାହିଁ ଗୋଟାଏ ଅଡ଼କୁ ଏକମୁହାଁ ଦୌଡ଼ିଲା । ଦୌଡ଼ ଦୌଡ଼ ଗୋଡ଼ ଥକିଯିବାରୁ ଗୋଟାଏ ଗଛମୂଳେ ଯାଇ ବସିପଡ଼ିଲା । ଝିରିଲେଇ ଝିରିଲେଇ ପବନ ବୋହୁଥିଲା । ସେଠାରେ ଜମ୍ବୁ ଗାଢ଼ନିଦ୍ରାରେ ପଡ଼ିଗଲା । ଗୋଟାଏ ମହାବଳବାଘ ସେବାଟେ ଯାଉଥିଲା । ସେ ପିଲଟିକୁ ଦେଖି ତା ପାଖରେ ବସିଲା ଏବଂ ତା ମୁହଁ ଶୁଙ୍ଘି ବାରିଲା ଯେ ପିଲଟି ଜୀଇଛି । ତା ମନରେ କରୁଣା ହେଲା କେଜାଣି ସେ ଜମ୍ବୁକୁ ଧୀରେ ଧୀରେ ଉଠାଇ ଦାନ୍ତରେ ଯାକି ପଳେଇଗଲା । ଗୋଟାଏ ବଡ଼ ପର୍ବତ ଭିତରେ ବାଘର ଗୁମ୍ଫାଥିଲା । ସେ ଗୁମ୍ଫାରେ ବାଘୁଣୀ ଯୋଡ଼ିଏ ଛୁଆଙ୍କୁ ଖେଳାଉଥିଲା । ବାଘ ଜମ୍ବୁକୁ ଧରି ସେଠାରେ ପହଞ୍ଚିଲା ଏବଂ ଧୀରେ ଧୀରେ ତାକୁ ଗୁମ୍ଫା ଭିତରେ ଶୁଆଇଦେଲା । ବାଘୁଣୀ ତାକୁ ଦେଖି ଅଶ୍ଚର୍ଯ୍ୟ ହେଲା ଏବଂ ସ୍ନେହରେ ପିଲଟି ମୁହଁକୁ ବାରମ୍ବାର ଶୁଙ୍ଘିଲା । ଛୁଆମାନେ ତା ଚାରି ପଟେ ଘେରି ନାଚକୁଦ କଲେ । ମାତ୍ର ଜମ୍ବୁର ନିଦ ଭାଙ୍ଗିଲା ନାହିଁ । ବାଘ ବାଘୁଣୀ ପିଲା ପାଖରେ ବସିରହିଲେ । ଦିନ ଗଲା, ରାତି ହେଲା । ରାତି ଅଧ ସୁଦ୍ଧା ପିଲାର ନିଦ ଭାଙ୍ଗିଲା । ତାର ସବୁକଥା ମନେ ପଡ଼ିଗଲା । ସେ ଯେଉଁ ଗଛମୂଳେ ଶୋଇଥିଲା ଏହା ସେ ଗଛ ନୁହେଁ । ଗୋଟାଏ ଅତି ଉଚ୍ଚ ପାହାଡ଼, ଘୋର ଜଙ୍ଗଲ । ଗୋଟାଏ ବଡ଼ ଗୁମ୍ଫା ଭିତରେ ସେ ଓ ତା ପାଖରେ ଦୁଇଟା ମହାବଳବାଘ । ଏହା ଦେଖି ସେ ଭୟରେ ଥରଗଲା ଏବଂ ପୁଣି ଅଖିବୁଜି ପଡ଼ିଗଲା । କିଛି ସମୟପରେ ନିଦ ଲାଗିଗଲା ।

ଯେତେବେଳେ ତାର ନିଦ ଭାଙ୍ଗିଲା, ସେ ଦେଖିଲା, ତା ପାଖରେ ଗୋଟାଏ ମହାବଳ ବାଘୁଣୀ ବସି ଛୁଆଙ୍କୁ ଦୁଧ ଖୁଆଉଛି। ସୂର୍ଯ୍ୟକିରଣ ତାହାଁରେ ପଡ଼ି ଗୁହାଟି ଅଳ୍ପ ଅଳ୍ପ ହୋଇଯାଉଛି। ବାଘୁଣୀ ତାକୁ ଦେଖି ସ୍ନେହକଲା ଏବଂ ତା ମୁହଁକୁ ଦେଖି ଶୁଙ୍ଘିଲା। ଏଥିରେ ଜମ୍ବୁର ଅଦୌ ଭୟ ହେଲା ନାହିଁ। ବାଘୁଣୀ ଜମ୍ବୁକୁ ମେଞ୍ଚାଏ ମାଂସ ଖାଇବାକୁ ଦେଲା। ଭୋକ ହେତୁ ଜମ୍ବୁ ସେତକ ଚୋବେଇ ଗାଇଗଲା। ତା ପରେ ସେ ଛୁଆମାନଙ୍କ ସଙ୍ଗେ ଖେଳିଲା। କିଛି ସମୟ ପରେ ବାଘ ସଜମାଂସ ଧରି ଆସି ପହଞ୍ଚିଲା। ସେ ଜମ୍ବୁକୁ ଦେଖି ସ୍ନେହ ଦେଖାଇଲା ଏବଂ ତା ମୁହଁକୁ ଶୁଙ୍ଘିଲା। ତା ପରେ ବାଘ ବାଘୁଣୀ ଛୁଆ ଦୁହିଁଙ୍କୁ ଓ ଜମ୍ବୁକୁ ସଙ୍ଗରେ ଧରି ସେ ମାଂସ ଖାଇଲେ ଏବଂ ଖାଇସାରି ଖେଳ ଆରମ୍ଭ କଲେ। ଜମ୍ବୁ ସେମାନଙ୍କ ସଙ୍ଗେ ଏ ପଥରରୁ ଅନ୍ୟ ପଥର ଡେଇଁ ଖେଳିଲା ଏବଂ ଛୁଆମାନଙ୍କ ପାଖରେ ଯାଇ ଦୌଡ଼ିଲା। ବାଘ ବାଘୁଣୀ ଏହା ଦେଖି ଖୁବ୍ ଖୁସି ହେଲେ।

○

ଏହିପରିଭାବରେ ଅନେକ ଦିନ ବାହାରିଗଲା। ଜମ୍ବୁ ସେମାନଙ୍କ ସଙ୍ଗରେ ରହି କଥା କହିବା ଭୁଲିଗଲା ଏବଂ ଖାଲି ଗୋଟାଏ ଶବ୍ଦ କଲା। ଛୁଆମାନେ ବଢ଼ିଲେ। ଜମ୍ବୁ ବି ବଢ଼ିଲା। ସେ ଆଉ ସିଧାହୋଇ ନ ଚାଲି ଚାରି ହାତଗୋଡ଼ରେ ଚାଲିବାକୁ ଲାଗିଲା ଏବଂ ନଈରେ ମୁହଁ ବୁଡ଼େଇ ପାଣି ପିଇଲା। ଖାଇଲାବେଳେ ହାତରେ ନେଇ ଖାଉଥିଲେହେଁ ସେହି କଞ୍ଚାମାଂସକୁ ଖୁବ୍ ଆଗ୍ରହ କରୁଥିଲା। ମନୁଷ୍ୟ ସ୍ୱଭାବ ଯୋଗେ ସେ ଗଛରେ ଚଢ଼ି ଯାଉଥିଲା। ମାଙ୍କଡ଼-ମାନଙ୍କ ଅନୁକରଣ କରି ସେ ଏ ଡାଳରୁ ସେ ଡାଳକୁ ଡେଇଁ ଥିଲା।

ଅସ୍ତେ ଅସ୍ତେ ପୁଣି ଏଗଛରୁ ସେ ଗଛ, ଏ ପାହାଡ଼ରୁ ସେ ପାହାଡ଼, ନାଳ ଏ କୂଳରୁ ସେ କୂଳ ଅନାୟାସରେ ଡେଇଁଗଲା । ବଡ଼ ବଡ଼ ଗେଧମାନଙ୍କ ସଙ୍ଗେ ଏଗଛରୁ ସେ ଗଛକୁ ଡେଇଁ ଖୁବ୍ ଲଢ଼ିଲା । କେବେ ବାଘ, ଭାଲୁ, ହାତୀମାନଙ୍କ ସଙ୍ଗେ ବି ଲଢ଼େଇ କଲା । ଅନେକ ଜନ୍ତୁ ତା ସଙ୍ଗେ ଲଢ଼େଇ କରି ମଲେ । ଗୁରୁଅନ୍ତେ ଗୋଟାଏ ଡୋକୁଅ ଭୟ ପଡ଼ିଗଲା । ଛୋଟ ଛୋଟ ଜୀବଜନ୍ତୁମାନେ ଜମ୍ବୁ ଭୟରେ ଥରିବାକୁ ଲାଗିଲେ ।

— — —

## —ତିନି—

ଏପରି ଭାବରେ କେତେକାଳ ବାହାରିଗଲା । ଜମ୍ବୁ ପ୍ରତ୍ୟହ ଗ୍ରାମରୁ ତାହାର ଗୃହପଛେ ବାରକୋଶ ଅନ୍ତରରେ ସମସ୍ତ ଅଞ୍ଚଳକୁ ନିଜ ହାତ ମୁଠାରେ ରଖିଲା । ତାର ବଳ ଦର୍ପ ଦେଖି ପଶୁମାନେ ଭୟରେ ଥରିଗଲେ । ତାକୁ ଦେଖିଲେ ତାଠାରେ ଶରଣ ପଶିବାପାଇଁ ଲଇଁ ପଡୁଥିଲେ । ତାର ଆଜି ମନୁଷ୍ୟ ଦେହର ଚିହ୍ନ ନାହିଁ । ପଶୁମାନଙ୍କ ସଙ୍ଗେ ଜୀଅପିଅ ଚଳାବୁଲା କରି ସେମାନଙ୍କ ସାଙ୍ଗେ ରହି ସେ ହେଲା ଜାଳକଟେ ଚତୁର ପଶୁ । ଦଶବର୍ଷ ବେଳକୁ ତା ଦେହ ଭାଲୁପରି ଗୁଡ଼ାଏ ଘନ କଳା ବାଳରେ ପୂରିଗଲା । ଦୂରରୁ ଦେଖିଲେ ସେ ଗୋଟାଏ ପ୍ରକାଣ୍ଡ ଭାଲୁପରି ଦେଖାଯାଉଥିଲା । ମାତ୍ର ମୁହଁଟା ତାର ନାଲି ଗୋଲଗାଲ ଦିଶୁଥିଲା । ସେ କେତେବେଳେ ମାଂସ କେତେବେଳେ ଫଳ ପ୍ରଚୁର ପରିମାଣରେ ଖାଇ ଖଣ୍ଟେ ବଳିଗଲା । ସେ ଗଛରୁ ଗଛକୁ ଡେଇଁ ଲଇମାନଙ୍କରେ ଅଙ୍ଗ ପ୍ରକାରରେ ଝୁଲିଖେଳି ବହୁତ ଅଦ୍ଭୁତ କାଣ୍ଡମାନ କଲା । ଅତି ଉଚ୍ଚ ଗଛମାନଙ୍କରେ ଖୁବ୍ ଦ୍ରୁତ ବେଗରେ ଚଢ଼ି ଅଗଡ଼ିପକୁ ଉଠି ଯାଉଥିଲା ଏବଂ ସେଠାରୁ ଏକା ଝମ୍ପରେ ତଳେ ଥିବା ଗଭୀରଅ ନଈ କିମ୍ବା ପାଚ ଭିତରକୁ ଡେଇଁ ପଡ଼ୁଥିଲା । ସାଙ୍ଗେ ସାଙ୍ଗେ ଗୋଟାଏ ପ୍ରକାଣ୍ଡ ଜଳଚର ଜୀବ ପରି ସେ ପାଣିରେ ଏ ମୁଣ୍ଡ ସେ ମୁଣ୍ଡ ଅତିଶୀଘ୍ର ପହଁରି ପଳାଇ ଯାଉଥିଲା ।

ତାର ଏସବୁ କାଣ୍ଡ ଦେଖି ବଣମଧ୍ୟରୁ ପଶୁମାନେ ଡରିଗଲେ । ଯେ ଟିକିଏ ଅମାନ୍ୟ କଲା ସେ ତାକୁ ମାରି ଶତଖଣ୍ଡ

କର ଦେଉଥିଲା । ବାଘ ସିଂହମାନେ ଝିକିଏ ତାକୁ ଦେଖାଉର କଲେ ସେ ସେମାନଙ୍କ ସଙ୍ଗେ ଲଢ଼ି କାହାକୁ ଏକାମୃଥକେ, କାହାକୁ ଗ୍ୟୁକ୍ତାକେ, କାହାକୁ ଗୋଇଠାକେ, କାହାର ତୋଟି ଚପି ମାର ଶୁଅଇ ଦେଉଥିଲା । ସିଂହ ବାଘମାନଙ୍କର ଏ ଅବସ୍ଥା ଦେଖି ଅନ୍ୟାନ୍ୟ ଜନ୍ତୁମାନେ ତାକୁ ଡ଼ରିଗଲେ । ଅନେକ ଜନ୍ତୁ ସେ ବଣ ଛାଡ଼ ଅନ୍ୟ ବଣକୁ ପଳେଇଗଲେ । ଯେଉଁ ଜନ୍ତୁମାନେ ତା କଥା ମାନୁଥିଲେ ସେ ତାଙ୍କ ବହୁତ ସ୍ନେହ କରୁଥିଲା, ସେମାନଙ୍କ ସଙ୍ଗେ ଖେଳ ବୁଲ କରୁଥିଲା ଏବଂ ନାନାଦ ଫଳ ଗଛମାନଙ୍କରୁ ତୋଳି ଅଣି କିମ୍ବା ଜନ୍ତୁମାନଙ୍କ ମାଂସ ଅଣି ସେମାନଙ୍କୁ ଖାଇବାକୁ ଦେଉଥିଲା । ଏଥିଯୋଗେ ଖୁବ୍ ବଡ଼ ବଡ଼ ଜନ୍ତୁ ବାଘ, ସିଂହ, ମହିଷ ଠାରୁ ଅତ୍ମେକର ଅତ ଛୋଟିଆ ଜନ୍ତୁ ଠେକୁଅ ନେଉଳ ପର୍ଯ୍ୟନ୍ତ ସମସ୍ତେ ଅତ ଅଳ୍ପ ଦନରେ ତାର ବଶୀଭୂତ ହୋଇ ଗଲେ । ସେ ଗୋଟାଏ ପାହାଡ଼ ଉପରେ ଠିଆ ହୋଇ କିମ୍ବା ଅତ ଉଚ୍ଚ ଗୋଟାଏ ଗଛ ଅଗରେ ବସି ଗୋଟାଏ ଭୀଷଣ ଚିତ୍କାର କରେ । ତାହା ଶୁଣି ସମସ୍ତ ଜନ୍ତୁ ଧାଇଁ ଅସି ତା ପାଖରେ ରୁଣ୍ଡ ହୋଇଯାନ୍ତି । ସେ ସେମାନଙ୍କ ସଙ୍ଗେ କେତେବେଳେ ଖେଳ କରେ, କେତେବେଳେ ଅନ୍ୟ ଦୂରବର୍ତ୍ତୀ ବଣକୁ ଯାଇ ସେଠାରେ ଜନ୍ତୁ ଶିକାର କରେ, କେତେବେଳେ ଅବା ଅନ୍ୟ ବଣର ଜନ୍ତୁମାନଙ୍କ ସଙ୍ଗେ ଲଢ଼େଇ କର ସେମାନଙ୍କୁ ବଶୀଭୂତ କରେ । ଏହିପର ଭାବରେ ବର୍ଷେ ପାଞ୍ଚୋଟା ଭିତରେ ସେ ସମୁଦାୟ ବଣ ଭିତରେ ଏକଛତ୍ର ରଜା ହୋଇଗଲା । ଜମ୍ବୁ ନାମରେ ସୁବଧାରେ ସେ ଦାହାକୁ ଡେକିଲା । ସେ ବଣ ଭିତରେ ଯେତେ ବଣୁଆ ଲୋକ-

ଥିଲେ ଏବଂ ଡାକୋଇତମାନଙ୍କର ସର୍ବସ୍ୱ ଲୁଣ୍ଠନକରି ନେଇ ଯାଉଥିଲେ, ସେମାନେ ଅଉ ତା ଉପଦ୍ରବରେ ସେଠାରେ ରହି ନପାରି ଦେଶ ଭିତରକୁ ପଳେଇଗଲେ ଏବଂ ଜମ୍ବୁ କଥା ଚାରିଆଡେ ପ୍ରସିଦ୍ଧ ହେଲା। ସେ ମହାବଣ ଭିତରେ ଅନେକ ରାସ୍ତା ଅନେକ ଆଡେ ପଡିଥିଲା। ତହିଁରେ ଏଦେଶର ଲୋକେ ସେ ଦେଶକୁ ଯିବା ଆସିବା କରୁଥିଲେ। ଜମ୍ବୁ ଭୟରେ କେହି ଅଉ ସେ ବଣଭିତରେ ଯିବାକୁ ସାହସ କଲେ ନାହିଁ। ସେ ବଣବାଟ ଏକାବେଳକେ ପଡ଼ିଗଲା।



## —ଗୁଜବ—

ଜମ୍ବୁ ମାଁ ଗୁଜବ ଅଡ଼େ ଗସ୍ତ ହୋଇଗଲା । ସେ ମହାବଣରେ ଜମ୍ବୁ ଉପୁ କଥା ଲୋକେ କୁହାକୁହି ହେଲେ । ଖବର କାଗଜ-ମାନଙ୍କରେ ସେ କଥା ବାରମ୍ବାର ବାହାରିଲା । ଲୋକେ ବଡ଼ ଆଶ୍ଚର୍ଯ୍ୟ ହୋଇ ଭାବିଲେ, "ଜମ୍ବୁ ଗୋଟାଏ କଅଣ ? ସେ କି ପ୍ରକାର ଜୀବ ? କାହିଁ ଏପରି ଜୀବର ନାଁ ତ କେବେ ଶୁଣା ନ ଥିଲା ?" ଏହି ପ୍ରକାର ପ୍ରଶ୍ନ ବହୁ ଲୋକଙ୍କ ମୁହଁରେ ଶୁଣାଗଲା, ମାତ୍ର ଏହାର ଉତ୍ତର କେହି ଦେଇ ପାରିଲେ ନାହିଁ ।

ପଣ୍ଡିତମାନେ ପାଠ ଅର୍ଥ କଲାବେଳେ, କର୍ମଚାରୀମାନେ ଅଫିସରେ କାମ କରୁଥିଲା ବେଳେ, ବେପାରୀମାନେ ବିକା କିଣା ସମୟରେ, ଚାଷୀମାନେ ଚାଷ କଲାବେଳେ ଓ କାରିଗରମାନେ ତାଙ୍କ କାରିଗରୀ କାମରେ ଲାଗିଥିଲା ବେଳେ ଖାଲି ଜମ୍ବୁ କଥା ନେଇ ବ୍ୟସ୍ତ ରହିଲେ । ଯୁଆଡ଼େ ଶୁଣିବ ଖାଲି ଜମ୍ବୁ କଥା, ଲୋକସାଧାରଣ ଖାଲି ଏହି କଥା ନେଇ ବ୍ୟସ୍ତ । ଏ ଖବରର କିଛି ଗୋଟାଏ ମୀମାଂସା ନ ହେବାରୁ ଲୋକଙ୍କ ଆଗ୍ରହ ଦିନୁଦିନ ବଢ଼ିଲା ସିନା, ଅଳ୍ପ କମିଲା ନାହିଁ ।

ଥରେ ଦଳେ ଶିକାରୀ ଏହିପରି ଆଗ୍ରହବଶତଃ ସେ ବଣ ଭିତରକୁ ଯାଇ ଜମ୍ବୁକୁ ଦେଖିବାକୁ ବାହାରି ପଡ଼ିଲେ । ସେମାନେ ସମସ୍ତେ ଯୁବକ, ଖୁବ୍ ପାରିବାର ଲୋକ । ସେମାନେ ବହୁତ ବନ୍ଧୁକ, ଛରୁର ଗୁଳି ବାରୁଦ ଓ ସାତଦିନର ଆହାର ସଙ୍ଗରେ ଧରି

ହେଲେ । ବହୁତ ଭୟରେ ଅନେକ ଅନୁସନ୍ଧାନ କରି କରି ଶେଷେ ସେମାନେ ଗୋଟାଏ ପାହାଡ଼ରେ ଯାଇ ରହିଲେ । ରାତ୍ରି ଅଧରେ ଗୋଟାଏ ଭୀଷଣ ଚିତ୍କାର ଶୁଣି ସେମାନେ ଚମକିପଡ଼ିଲେ । ତାହା କୌଣସି ଜୀବଜନ୍ତୁର ଶବ୍ଦପରି ଶୁଣାଗଲା ନାହିଁ । ଅପର ଗୋଟାଏ ଅଦ୍ଭୁତ ଶବ୍ଦପରି ସେମାନଙ୍କୁ ଲାଗିଲା । ସେ ଭୀଷଣ ଶବ୍ଦ ସମୁଦାୟ ବନପ୍ରଦେଶକୁ କମ୍ପମାନ କରିଦେଲା । ତା ପରେ ଗୁହାଅଡ଼ୁ ଅନେକ ପ୍ରକାର ରଡ଼ି ଶୁଣାଗଲା । ବାଘମାନେ ନାହାଳିଲେ, ସିଂହମାନେ ଗର୍ଜିଲେ, ହାତୀ ଓ ଗୟଳମାନେ ଚିତ୍କାରିଲେ, ଭାଲୁମାନେ ଶହ୍ମ-ରିଲେ, ବାରହ୍ମାମାନେ ହାମ୍ବୁରିଲେ, ସମ୍ବରମାନେ ଠୁଙ୍କାରିଲେ, ମିରିଗମାନେ କୁଥିଇଲେ, ଖୁରୁଙ୍ଗମାନେ କେଁଆରିଲେ, ମୟୂରମାନେ କେକିଲେ, କୁକୁଡ଼ାମାନେ କଟାରିଲେ ଏବଂ ହନୁମାନେ ହୁଙ୍କାରିଲେ । ସେ ସମ୍ମିଳିତ ରଡ଼ିରେ ଦଶଦିଗ କମ୍ପିଗଲା । ତାପରେ ଭୟତ୍ରସ୍ତ ହୋଇ ଜନ୍ତୁମାନେ ଗୁହାଅଡ଼େ ଦୌଡ଼ିବାର ଶବ୍ଦ ଶୁଣାଗଲା । ଦୌଡ଼ିବା ସଙ୍ଗେ ସଙ୍ଗେ ଗର୍ଜନ ମଧ୍ୟ ଶୁଭୁଥାଏ । କାଳେ କୌଣସି ଜନ୍ତୁ ସେମାନଙ୍କ ଅଡ଼କୁ ଦୌଡ଼ି ଆସିବ ବୋଲି ଭୟଙ୍କର ସେମାନେ ଗଛମାନଙ୍କରେ ଚଢ଼ିଗଲେ ଏବଂ ବନ୍ଧୁକମାନ ଟେକି ରଖିଲେ । ରାତି ପାହିବା ପର୍ଯ୍ୟନ୍ତ ଜନ୍ତୁମାନଙ୍କର ଦୌଡ଼ା ଦୌଡ଼ି ଶୁଭୁଥାଏ ।

ଶିକାରୀମାନେ କୌଣସି କଥା ବୁଝିପାରିଲେ ନାହିଁ । ସେହି-ପରି ଗଛ ଉପରେ ଥାଇ ଭୟରେ ଗୁହାଅଡ଼କୁ ଅନାଇଁ ରହିଲେ । ସକାଳ ହେଲାବେଳକୁ ଦେଖାଗଲା ଅସଂଖ୍ୟ ମହାବଳ ବାଘ, ସିଂହ, ଭାଲୁ, ହାତୀରେ ତାଙ୍କ ଗୁହାପଟ ବଣ ପୁରି ଯାଇଛନ୍ତି । ଏମାନେ ଲଗ

ଜର ବୃଦ୍ଧଅଡ଼କୁ ବନ୍ଧୁକ ଛୁଟଲେ । ସେଥିରେ ଅନେକ ଜନ୍ତୁ ମଲେ, ଅନେକ ଦରମରା ହେଲେ । ଏ ସମୟରେ ଗୋଟାଏ ଜନ୍ତୁଙ୍କର ରଡ଼ି ଶୁଣାଗଲା । ସେ ରଡ଼ଘାତରେ ଅନ୍ୟ ରଡ଼ି ସବୁ କୁଆଡ଼େ ଛପିଗଲା । ଏ ସମୟରେ ଶିକାରୀମାନେ ଦେଖିଲେ କପ ଗୋଟାଏ ଜନ୍ତୁଙ୍କର ବୃକ୍ଷର ଚଢ଼ରୁ ଚଢ଼କୁ ଡେଇଁ ଗୋଟାଏ ଖଣ୍ଡିଆ ଭୂତ ଦରେ ସେମାନଙ୍କ ଅଡ଼କୁ ମାଡ଼ି ଆସୁଛି । ସେମାନେ ତାକୁ ଦେଖି ଭୟରେ ଅତର୍କି ଗଲେ । ଏହି ବୋଧହୁଏ ଜମ୍ମୁ ବୋଲି ସେମାନଙ୍କ ମନରେ ଧାରଣା ଆସିଲା । ଏମାନେ କୁଆଡ଼କୁ ବନ୍ଧୁକ ମାରିବେ, କଅଣ କରିବେ, କିଛି ବୁଝି ପାରିଲେ ନାହିଁ । ହଠାତ୍ ଜମ୍ମୁ ସେ ଚଢ଼କୁ ଡେଇଁ ଆସିଲା ଏବଂ ପ୍ରକାଣ୍ଡ ଡାଳମାନ ତା ଆଘାତରେ ଦୋହଲି ଗଲା । ବାଣୁଆମାନେ ସେ ଡାଳମାନଙ୍କରେ ରହି ନ ପାରି ତଳକୁ ଖସିପଡ଼ିଲେ । ତଳେ ପଡ଼ି କାହାର ମୁଣ୍ଡ ଛେଚା ହୋଇଗଲା, କାହାକୁ ବାଘ ସିଂହ ଭାଲୁ ମାନେ ଖାଇଗଲେ । ଦଣ୍ଡକ ଭିତରେ ସବୁ ଶେଷ ହୋଇଗଲା ।

ସେମାନଙ୍କ ଭିତରୁ ଜଣେ ବାଣୁଆ ଗୋଟାଏ ବୁଦା ଉପରେ ଛିଟିକି ପଡ଼ିଥିଲା । ତାର ଆଘାତ ଖୁବ୍ ସାମାନ୍ୟ ଥିଲା । ସେ ସେହି ବୁଦା ଭିତରେ ଲୁଚି ରହିଗଲା । ତାର ସାଙ୍ଗମାନଙ୍କୁ ଜନ୍ତୁମାନେ ଖାଇ ଯିବାର ଦେଖି ତା ପ୍ରାଣ ଭୟରେ ଥରୁଥାଏ । ସେ ସେହି ଲୁଚି ଭିତରେ ଥାଇ ଜମ୍ମୁକୁ ଦେଖୁଥାଏ । ଜମ୍ମୁ ଗଛଡାଳମାନଙ୍କରେ ଦୁଲ୍‌ଦାଲ୍ ଡେଇଁ ଘଡ଼ିକ ପରେ ତଳକୁ ଗୋଟାଏ କୁଦା ମାରିଲା ଏବଂ ବାଘସିଂହମାନଙ୍କ ମୁହଁକୁ ଧରି ଖୁବ୍ ଗେଲ କଲା । ତାପରେ

ବନ୍ଧୁକ ଗୁଳିର ଧକ ଉନଟଣ୍ଡ ଗୁଡ଼ଖଣ୍ଡ କରି ଭାଙ୍ଗି ଏଣେତେଣେ ଫିଙ୍ଗିଦେଲା । ତାର ବଳକା, ଭୀଷଣଶକ୍ତି ଏବଂ ମହାବଳ ବାଘମାନଙ୍କୁ ଗେଲି କରୁଥିବାର ଦେଖି ଲୁଚିଥିବା ବାଣୁଆ ଅସ୍ଥିର ହୋଇଗଲା, ସେହି ଭୟଙ୍କର ଜନ୍ତୁ ସମ୍ବନ୍ଧରେ ତାର କୌଣସି ଧାରଣା ହୋଇପାରିଲା ନାହିଁ । ତା ପରେ ଜମ୍ବୁ ଏଣେ ତେଣେ ଧାଇଁ କୁଦାମାରି ପାହାଡ଼ର ପଥରମାନ ଏଣେ ତେଣେ ଫିଙ୍ଗି ଗୋଟାଏ ଦିଗକୁ ଖୁବ୍ ଜୋରରେ ଧାଇଁ ଗଲା । ସେତେବେଳେ ସେ ପଛ ଦୁଇ ଗୋଡ଼ରେ ଧାଉଁଥିଲା ଏବଂ ଆଗ ଦୁଇଗୋଡ଼ ମଣିଷ ହାତପରି ଦୁଇ କଡ଼ରେ ଝୁଲୁଥିଲା । ମଣିଷପରି ଅନେକ ଲକ୍ଷଣ ଦେଖାଯାଉଥିଲେ ମଧ୍ୟ ପଶୁପରି ତା ଦେହ ଦିଶୁଥିଲା । ବାଣୁଆ ଏସବୁ ଦେଖି ଭାବୁଥିବା ବେଳେ ଜମ୍ବୁ ପଳାଇ ଗଲା ଏବଂ ଅନ୍ୟ ଜନ୍ତୁମାନେ ତା ପଛେ ପଛେ ଦୌଡ଼ି ଚାଲିଗଲେ । ମୁହୂର୍ତ୍ତକ ଭିତରେ ସେ ଜାଗା ଶୂନ୍ଶାନ୍ ହୋଇଗଲା । ବାଣୁଆ ଭୟରେ ଚାରିଆଡ଼କୁ ଚାହିଁ ସେ ବୁଦା ଭିତରୁ ବାହାରିଲା ଏବଂ ଜମ୍ବୁ ଜନ୍ତୁମାନଙ୍କ ଡର ଯୁଆଡ଼େ ଗଲା ତାର ବିପରୀତ ଦିଗକୁ ସେ ଏକମୁହାଁ ହୋଇ ପଳାଇଲା । କିଛି ଦିନ ବଣଭିତରେ ଚାଲି ଚାଲି ଶେଷରେ ଦେଶ ଭିତରେ ପହଞ୍ଚିଲା ଏବଂ ଲୋକମାନଙ୍କୁ ଜମ୍ବୁର ସମସ୍ତ ଘଟଣା କହିଲା ।

ଏ କଥାସବୁ ଖବରକାଗଜମାନଙ୍କରେ ବାହାରିଲା । ଲୋକେ ଚାରିଆଡ଼େ ସେ କଥା ଶୁଣି ଅତ୍ୟନ୍ତ ଅସ୍ଥିର ହୋଇଗଲେ । ଜମ୍ବୁ ବୋଲି ଏ ଯେଉଁ ଅଦ୍ଭୁତ ଜୀବ ନୂଆ ହୋଇ ବାହାରିଲା, ତାକୁ ଦେଖି-ବାକୁ ଲୋକମାନଙ୍କର ଭାରି ଆଗ୍ରହ ହେଲା । ମାତ୍ର ସେ ଘୋର ବଣ ଭିତରକୁ କିଏ ଯିବ ଯେ ଜମ୍ବୁକୁ ଦେଖିବ ? ସେ ଘୋର ବଣ

ବୃକ୍ଷପଟେ ଯେତେ ଗାଁ ଗଣ୍ଡା ସହର ସବୁ ଥିଲା, ସେ ସବୁ ଜାଗାର ଲୋକମାନେ ଜମ୍ବୁ ଭୟରେ ଅଉ ସେ ଜାଗା ମାନଙ୍କରେ ରହି ପାରିଲେ ନାହିଁ, ଦଶ କୋଶ ପନ୍ଦର କୋଶ ଦୂରକୁ ପଳେଇ ଗଲେ । ଘର ବାଡ଼ି ସବୁ ପଡ଼ିଆ ପଡ଼ିଲା । ସେ ବଣ ବେଢ଼ନ୍ତ ଚଉଦିଗ ଦଶ କୋଶ ମଧ୍ୟରେ ସବୁ ପଦା ହୋଇଗଲା ।

---

## —ପାଞ୍ଚ—

ସେ ସମୟରେ ଦଳେ ଖୁବ୍ ପ୍ରସିଦ୍ଧ ସର୍କଶବାଲା ବୋମ୍ବେ ଅଞ୍ଚଳରୁ ଆସି ନାଗପୁର ସହରରେ ସର୍କଶ କରୁଥିଲେ । ଦୁଇବର୍ଷ ଧରି ତାଙ୍କ ସର୍କଶ ଚାଲିଥାଏ । ସେମାନେ କେତେ ବାଘ ଭାଲୁଙ୍କ ଖେଳ, କେତେ ହାତୀ ଘୋଡ଼ା ଖେଳ, କେତେ କୁସ୍ତି କସରତ୍ ଦେଖାଉଥାନ୍ତି, ତାର ସୀମା ନାହିଁ । ତାଙ୍କ ସର୍କଶଖେଳ ଏତେ ଚମତ୍କାର ହେଉଥାଏ ଯେ, ତାହା ଦେଖିବାକୁ ପ୍ରତିଦିନ ଶହ ଶହ ଲୋକ ଆସୁଥାନ୍ତି ।

ସେ ସର୍କଶ ଦଳର ଯେ ମାଲିକ ସେ ଜଣେ ପାର୍ଶୀ । ଖୁବ୍ ହାଣ୍ଡୁଆ ଜବରଦସ୍ତ ଲୋକ । ତାଙ୍କ ସଙ୍ଗେ ତାଙ୍କର ଗୋଟିଏ ଝିଅ ଆସିଥାଏ । ତା ନାଁ । ଚମ୍ପକସୁନ୍ଦରୀ । ସେ ଖୁବ୍ ସୁନ୍ଦରୀ, ଶିକ୍ଷିତା, ପୁଣି ଯୁବତୀ । ସେ ସର୍କଶରେ ଏତେ ସୁନ୍ଦର ଖେଳ ସବୁ ଦେଖାଏ ଯେ, ତା ଦେଖି ଲୋକମାନେ ଅଶ୍ଚର୍ଯ୍ୟ ହୋଇଯାନ୍ତି । ବେଶୀ ଭାବରେ ତା ଖେଳ ଦେଖିବାକୁ ଶହ ଶହ ଲୋକ ଦୌଡ଼ନ୍ତି । ସର୍କଶ ମାଷ୍ଟର ଝିଅକୁ ଖୁବ ଭଲ ପାଆନ୍ତି । ନିଜ ପ୍ରାଣଠାରୁ ବଳି ଅଧିକ ସ୍ନେହ କରନ୍ତି । ସେ ମାତୃଶୂନ୍ୟା । ଥିବାରୁ ବାପାଙ୍କଠାରୁ ମା ଓ ବାପା ଉଭୟ ସ୍ନେହ ଜବରଦସ୍ତ ଅସୁଲ କରେ । ବାପା ସ୍ନେହରେ ତାକୁ ଚମ୍ପା ବୋଲି ଡାକନ୍ତି । ଚମ୍ପାଟି ସୁନ୍ଦରୀ ଓ ଶିକ୍ଷିତା ଯେତିକି, ଗୁଣବତୀ ମଧ୍ୟ ସେତିକି । ସେ ବାପା ପ୍ରତି କେବେହେଁ

ଅବାଧ ହୁଏ ନାହିଁ । ବାପାଙ୍କ ମନ ଜାଣି ତାଙ୍କ ସେବାରେ ତନସ୍ଵତ ଲାଗିଥାଏ । ସର୍କସଦଳ ଭିତରେ ଯେତେ ଲୋକ କାମକରୁ ଥାନ୍ତି, ଚମ୍ପା ସମସ୍ତଙ୍କୁ ଆଦର ସ୍ନେହ କରେ; ତା ବ୍ୟବହାରରେ ସମସ୍ତ ଲୋକେ ଖୁସି ଥାଆନ୍ତି । ଯେଉଁ ଜୀବଜନ୍ତୁମାନେ ସର୍କସରେ କାମ କରୁଥାନ୍ତି ସେମାନେ ବି ଚମ୍ପାର ସ୍ନେହ ଆଦର ଖୁବ୍ ପାଆନ୍ତି । କୌଣସି ବାଘ ଭାଲୁ ବା ସିଂହ, ହାତୀ କେହୁ ନିଜ ସର୍ଦାର କଥାରେ ଅବାଧ ହେଲେ ଯେବେ କୋରଡ଼ା ମାଡରେ ବାଟକୁ ନ ଆସେ, ତେବେ ଚମ୍ପାକୁ ଡାକରା ପଡ଼େ । ଚମ୍ପା ଆସିଲେ ସେ ଜନ୍ତୁମାନେ ତା ପାଖରେ ନଇଁ ପଡ଼ନ୍ତି ଏବଂ ଗୋଟିଏ ଛୋଟ ପିଲା ପରି ତା ଗୋଡ଼ତଳେ ଶୋଇ ପଡ଼ି ଘୁଙ୍ଗୁରୁ ଘୁଙ୍ଗୁରୁ ଶବ୍ଦ କରନ୍ତି । ଚମ୍ପା ସେମାନଙ୍କୁ ଭଲ ଭଲ ଖାଦ୍ୟ ଖାଇବାକୁ ଦେଇ ସେମାନଙ୍କ ମୁହଁ କଣ୍ଠ ଆଉଁଷି ଦିଏ ଏବଂ ସେମାନଙ୍କୁ ଯାହା କହେ ତାହା ସେମାନେ ତତ୍‌କ୍ଷଣାତ କରନ୍ତି । ସେ ନିଜର ସ୍ନେହରେ ସମସ୍ତଙ୍କୁ ବଶ କରି ରଖିଥାଏ ।

ଯେତେବେଳେ ଜମ୍ବୁକଥା ଦେଶମଯ଼ ବ୍ୟାପିଗଲା ଏବଂ ଲୋକେ ଖାଲି ସେହି ଜମ୍ବୁକଥା କହିବାରେ ଲାଗିଲେ, ସେତେବେଳେ ନାଗପୁର 'ସହରଭିତରେ ଧମାଧମ୍ ସର୍କସ ଚାଲିଥାଏ । ସର୍କସ ମାଷ୍ଟର ଜମ୍ବୁ ଖବର ବହୁଲୋକଙ୍କଠାରୁ ଶୁଣୁଥାନ୍ତି ଏବଂ ଖବର କାଗଜରୁ ବି ପଢ଼ୁଥାନ୍ତି । ଜମ୍ବୁକୁ ଧରିବା ପାଇଁ ତାଙ୍କର ଭିତରେ ଭିତରେ ଗୋଟାଏ ଆଗ୍ରହ ଜନ୍ମିଲା । ସେ ମନେ କଲେ, ଯେବେ ଜମ୍ବୁକୁ ଧରି ଆଣି ସର୍କସରେ ଠିଆ କରାଯିବ, ତେବେ ହଜାର ହଜାର ଟଙ୍କା ରୋଜଗାର ହେବ; କିନ୍ତୁ ତାକୁ ଧରାଯିବ କିପରି ? ସର୍କସ ମାଷ୍ଟରଙ୍କ

ମୁଣ୍ଡ ଏଥି କଥାରେ ଖୁବ୍ ଖୁସିହେଲେ । ଦରବାରରେ କାମ କରୁଥିବା କେତେକ ସର୍ଦ୍ଦାରମାନଙ୍କ ସଙ୍ଗେ ସେ ଏ ବିଷୟରେ ଅନେକ ଆଲୋଚନା କଲେ । ସମସ୍ତେ ଜମ୍ମୁକୁ ଯିବାକୁ ଆଗ୍ରହ ପ୍ରକାଶ କଲେ; ତେଣୁ ସେ ବଣଭୋଜିକୁ ଯିବାକୁ ଆୟୋଜନ ଚାଲିଲା ।

ମାଷ୍ଟରଙ୍କ ଆଦେଶରେ ସର୍ଦ୍ଦାରମାନେ ସପ୍ତାହକ ଭିତରେ ସବୁ ଆୟୋଜନ କରିପକାଇଲେ । ଅନେକ ତମ୍ବୁ ଓ ତୋପ ସାଙ୍ଗରେ ଗଲା । ମାସକ ପାଇଁ ସମସ୍ତଙ୍କ ଖାଇବା ଜିନିଷ ଓ ଅନ୍ୟାନ୍ୟ ଲୋକଲସ୍କର, ଘୋଡ଼ା ହାତୀ । ଜନ୍ତୁମାନଙ୍କ ପାଇଁ ଲମ୍ବା ଛତର ପିଞ୍ଜରାମାନ ସାଙ୍ଗରେ ଚାଲିଲା । ଏ ସମସ୍ତ ଜିନିଷ ଶହେଖଣ୍ଡ ଟ୍ରେନରେ ଗଲା । ମୋର ଖୁବ୍ ଆଗ୍ରହ ଦେଖି ସର୍ଦ୍ଦାର ମାଷ୍ଟର ତାଙ୍କୁ ମଧ୍ୟ ସାଙ୍ଗରେ ନେଲେ । ଶଗଡ଼ ଗାଡ଼ିମାନଙ୍କରେ ବସି ସେମାନେ ପାଞ୍ଚ ଦିନରେ ବଣସୀମାରେ ପହଞ୍ଚିଲେ ।

———

## —ଛଅ—

ଗାଡ଼ିବାଲାମାନେ ସେମାନଙ୍କ ଶଗଡ଼ ବଳଦ ବଣ ଭିତରକୁ ନେବାକୁ ମଙ୍ଗିଲେ ନାହିଁ । ଜନ୍ତୁ ଓ ଜନ୍ତୁମାନଙ୍କ ଭୟରେ ଲୋକେ ଖୁବ ଅସ୍ଥିର ହୋଇ ଯାଉଥାନ୍ତି । ତେଣୁ ଶଗଡ଼ ନ ମିଳିବାରୁ ସର୍ଭେମାଷ୍ଟର ତିନିଶହ କୁଲି ବହୁତ ମଜୁରି ଦେଇ ନେଲେ । ସେମାନେ ଜିନିଷପତ୍ର ଧରି ଯାତ୍ରୀମାନଙ୍କ ସହ ବଣଭିତରକୁ ଚାଲିଲେ ।

ପ୍ରଥମେ ଦୁଇ ତିନିଦିନ ପଡ଼ିଲାବଣ ପଡ଼ିଲା । ହରିଣ, ମେକୁଆ, ମାଙ୍କଡ଼ ଆଦି ସାମାନ୍ୟ ପଶୁମାନେ ସେ ବଣରେ ଚଲାଚଳ ହେଉଥିଲେ । କେଉଁଠାରେ କେନ୍ଦୁଅଟାଏ, କେଉଁଠାରେ ହେଟା-ଟାଏ ମଝେ ମଝେ ଦେଖା ପଡ଼ୁଥିଲେ । ଏ ପଶୁମାନେ ମଣିଷମାନଙ୍କୁ ଦେଖି ଭୟରେ ଏଣେ ତେଣେ ପଳାଇ ଯାଉଥିଲେ । ତାପରେ ଘୋର ବନସ୍ତ ପଡ଼ିଲା । ସେ ବନସ୍ତ ଭିତରେ ଦୁଇଦିନ ଯାଇ ସେମାନେ ଗୋଟାଏ ବଡ଼ ପାହାଡ଼ ତଳେ ବୋହି ଯାଉଥିବା ନଈ କୂଳରେ ସାମାନ୍ୟ ଖୋଲାଜାଗା ଦେଖିକରି ସେଠାରେ ତମ୍ବୁମାନ ପକାଇ ରହିଲେ । ପ୍ରଥମଦିନ ଜନ୍ତୁର କୌଣସି ସନ୍ଧାନ ପାଇଲେ ନାହିଁ । ତା ପରେ ମାଷ୍ଟର ତିନିଟା ଦଳ ଠିକ୍ କରିଦେଲେ । ପ୍ରତି ଦଳରେ ତିରିଶି ଜଣ କରି ଲୋକ ରହିଲେ । ସେମାନେ ଛୋଟ ଛୋଟ ତୋପ ବନ୍ଧୁକ ଟାଙ୍ଗିଆ ପ୍ରଭୃତି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଚାଲିଲେ । କଥାହେଲା, ସେମାନେ ସକାଳୁ ସନ୍ଧ୍ୟାବେଳଯାଏ

ଗୋଟାଏ ଦାଗ ଧରି ଦଶ ପନ୍ଦର ମାଇଲ ଯାଏ ବୁଲିବେ ଏବଂ ଜମ୍ମୁର ଖବର ସଂଗ୍ରହ କରିବେ ; ତା ପରେ ଡେରାକୁ ଫେରିଆସି ଖବର କହିବେ ।

ଏକଥା ହେଲାପରେ ସବୁଦଳ ଗୋଟାଏ ଗୋଟାଏ ଦାଗ ଧରି ବାହାରି ପଡ଼ିଲେ ଏବଂ ବୁଲି ବୁଲି ସନ୍ଧ୍ୟାବେଳକୁ ଫେରି ଆସିଲେ । ଜମ୍ମୁର କୌଣସି ସନ୍ଧାନ ସେମାନେ ପାଇ ପାରିଲେ ନାହିଁ । ତା ପରଦିନ ଡେରା ଆହୁରି ପନ୍ଦର ମାଇଲ ଭିତର ଜଙ୍ଗଲକୁ ଘୁଞ୍ଚିଗଲା । ସେଠାରୁ ଚାରିଟା ଦଳ ଘୁରିବାକୁ ଗଲେ । ସବୁଦଳ ସନ୍ଧ୍ୟାବେଳକୁ ଡେରାକୁ ଫେରି ଆସି ସେମାନେ ଯେଉଁ ସମ୍ବାଦ ଦେଲେ ତାହା ଶୁଣିଲେ ଦେହ ଥରିଯିବ । ସବୁଦଳଯାକ ଅନେକ ବାଘ ସିଂହଙ୍କ ହାବୁଡ଼ରେ ପଡ଼ି ମରିବାକୁ ବସିଥିଲେ । ଏତେ ବାଘ ସିଂହ ସେମାନଙ୍କୁ ଆକ୍ରମଣ କରିବାକୁ ଆସିଥିଲେ ଯେ ସେମାନେ ଅନେକ ତୋପ ବନ୍ଧୁକ ଫୁଟାଇ ମଧ୍ୟ ତାଙ୍କ ମୁହଁରୁ ବର୍ତ୍ତିବାର ଆଶା କରିପାରିଲେ ନାହିଁ । ଅଠଦଶଟା ଯାଏ ବାଘ ସିଂହ ମଲେ । ଗୁଡ଼ାଏ ଏଣେ ତେଣେ ପଳେଇଗଲେ । ତାପରେ ଏମାନେ ଆଉ ଅଧିକ ଅଗ୍ରସର ନ ହୋଇ ସେ ଭୟଙ୍କର ବଣଭିତରୁ କୌଣସିମତେ ଖସି ପଳେଇ ଆସିଲେ । ଜମ୍ମୁ ଖବର କିଛି ପାଇଲେ ନାହିଁ ।

———

## —ସାତ—

ରାତି ନଅଟା ଭିତରେ ସମସ୍ତେ ଖାଇ ପିଇ ସାରି ଯେ ଯା' ଅଡ୍ଡେ ଶୋଇ ପଡ଼ିଲେ । ପଲ୍ଲୀବାସୀମାନେ ଡେର ଗୃହମଧ୍ୟେ ଘେରହୋଇ ଥିବା ବୃହତ୍ କାଠପାଚେରୀ ଭିତରେ ବନ୍ଧୁ ତୋପ ବନ୍ଧୁକ ଧରି ଜଗା ପହରା ଦେଲେ । ଚାରିଆଡ଼ ଘୋର ଅନ୍ଧାର । ସେ ଅନ୍ଧାର ଭିତରେ କାହାରେ କଅଣ ହେଉଛି ତାହା ଜାଣିବାର ଉପାୟ ନ ଥିଲା । ରାତି ଏଗାରଟା ବେଳେ ଚାରିଆଡ଼େ ଖାଲି ମସମସ ଶବ୍ଦ ଶୁଣାଗଲା । ଘୁମ୍ ଘୁମ୍ ସେ ଶବ୍ଦ ଅଦ୍ଭୁତ ଭୟଙ୍କର ହୋଇଉଠିଲା । ଚାରିଆଡ଼ର ବଣବୁଦା ପାହାଡ଼ମାନ ଭାଙ୍ଗି ଯେପରି ଚୂରମାର ହୋଇ ପଡ଼ୁଛି ଯେପରି ଜଣାଗଲା । ପଲ୍ଲୀବାସୀମାନେ ଭୟରେ ଥରିଗଲେ । ସେମାନେ ମନେ କଲେ ଯେପରି ଶତସହସ୍ର ଭୂତପ୍ରେତ ଡାକିନୀ ଯାଦୁଗୁଣୀ ଆସି ସମୁଦାୟ ଡେରକୁ ଉପାଡ଼ି ଶୂନ୍ୟରେ ଉଡ଼ାଇ ନେଇ ଯାଉଛନ୍ତି । ସେମାନଙ୍କ ଗୋଡ଼ ତଳେ ଲାଗିଲା ନାହିଁ, ହାତରୁ ବନ୍ଧୁକ ଖସି ପଡ଼ିଲା । ଯେ ଯେଉଁଠାରେ ଥିଲେ ସେଇଠାରେ ଆଉ ଠିଆ ହୋଇ ନ ପାରି ଭୂଇଁ ଉପରେ ପଡ଼ିଗଲେ ।

ରାତି ଗୋଟାଏ ବେଳେ ପାଖରେ ଥିବା ଉଚ୍ଚ ପାହାଡ଼ ଉପରେ ଗୋଟାଏ ଭୟଙ୍କର ରଡ଼ି ଶୁଣାଗଲା । ସେ ରଡ଼ି ବଜ୍ର ଠାରୁ ଅଦ୍ଭୁତ ବେଶୀ ଭୟଙ୍କର । ଡେର ଭିତରେ ଯେତେଲୋକ ଶୋଇଥିଲେ ସମସ୍ତେ ଭୂତ ଭାଳିଲେ ଚଇଁ ଉଠି ପଡ଼ିଲେ । ସେଇ ରଡ଼ି ତୁହାକୁ ତୁହା ହେଲା । ଭୟ ଓ ବିସ୍ମୟରେ ସର୍ଦ୍ଦାର ମାଲୁର ଓ ତାଙ୍କ ସଙ୍ଗୀମାନେ

ଚମକି ପଡ଼ିଲେ । ତାହା ଯେ କି ଶବ୍ଦ ସେମାନେ ଠଉରେଇ ପାରିଲେ ନାହିଁ । ବାଘ ସିଂହ ଭାଲୁ ହାତୀ ଏମାନଙ୍କୁ ନେଇ ତ ସେମାନେ ସର୍ବଦା ରହନ୍ତି । ସେମାନଙ୍କ ଶବ୍ଦ ଏମାନେ ଭଲରୂପେ ଜାଣନ୍ତି । ଏ ରଡ଼ି କୌଣସି ପଶୁଜନ୍ତୁଙ୍କ ରଡି ପରି ଶୁଣାଗଲା ନାହିଁ, ତା ଠାରୁ ଅତୁଳ ଭୟଙ୍କର ଅଦ୍ଭୁତ ତୀବ୍ର ଭାବରେ ଶୁଣାଗଲା । ମନେ ହେଲା ଯେପରି ଗୋଟାଏ ଭୂମିକମ୍ପ ହୋଇ ଯାଉଛି ଏବଂ ତା ସଙ୍ଗେ ସଙ୍ଗେ ସମୁଦାୟ ବଣ ଜଙ୍ଗଲ ଭାଙ୍ଗି ଚୂନା ହୋଇ ଯାଉଛି । ସେ ରଡି ଶୁଣିଲା ସଙ୍ଗେ ସଙ୍ଗେ ବାଘ ସିଂହ ଭାଲୁ ହାତୀ ପ୍ରଭୃତିଙ୍କ ଭୀଷଣ ରଡି ମଧ୍ୟ ଏକ ସଙ୍ଗେ ଉଠିଲା । ବାହାରେ କି କାଣ୍ଡ ଯେ ଘଟୁଛି, ତାହା ଜାଣିବାର ଉପାୟ ନାହିଁ ।

ମାଷ୍ଟରଙ୍କ ଆଦେଶରେ ସିପେଇମାନେ ପାହାଡ଼ ଆଡ଼କୁ ଲକ୍ଷ୍ୟ କରି ତୋପମାନ ଦାଗିଲେ । ଅନେକ ହାତେଲି ବାଣ ଓ ବନ୍ଧୁକ ଫୁଟିଲା । ସେଥିରେ ସେ ରଡି ତୁମୁଳ ହୋଇ ଉଠିଲା । ବାଘ ହାତୀମାନେ ଭୟ ଖାଇ ପଛେ ଘୋର ରଡି କରିବା ସାଙ୍ଗେ ସାଙ୍ଗେ କାଠ ପାଚେରୀ ଭାଙ୍ଗି ପକାଇଲେ । ଅନେକେ ବେଗ ଆଡ଼କୁ କୁଦା ମାରି ଡେଇଁ ଆସିଲେ । ତମ୍ବୁମାନଙ୍କୁ ବଡ଼ ବଡ଼ ଆଲୁଅ ସେତେବେଳକୁ ଜଳି ବଣର ବହୁ ଦୂର ଯାଏ ଆଲୋକିତ କରି ଦେଉଥିଲା । ସେ ଆଲୁଅରେ ଯେତେ ଜନ୍ତୁ ଦେଖା ପଡ଼ିଲେ ସମସ୍ତେ ତୋପ ବନ୍ଧୁକରେ ମଲେ । ଅନେକ ଜନ୍ତୁ ଭୟରେ ଏଣେ ତେଣେ ପଳେଇ ଗଲେ । ହାତୀପଲ ଆସି ତମ୍ବୁର କେତେଗୁଡ଼ାଏ କାଲୀଘର ଭାଙ୍ଗି ପକାଇଲେ ଏବଂ ଅନେକ ଆଲୁଅ ନଷ୍ଟ କରି ଦେଲେ । କୁଲିଙ୍କ ଭିତରୁ କେତେକ ହାତୀପାଦତଳେ ଦଳି ହୋଇଗଲେ ।

ଗୃହ ଅତି ଭୟବିହ୍ୱଳିତାରେ ପୂରିଗଲା । ଦୁର୍ଗର ସମସ୍ତେ ବିରକ୍ତାପନ୍ନ ହୋଇ ଥିଲେ । କେହି ଦୁର୍ଗ ଘରମାନଙ୍କରୁ ପଦାକୁ ବାହାରିବାକୁ ସାହସ କରି ପାରିଲେ ନାହିଁ ।

ଜନ୍ତୁମାନଙ୍କ ଭିତରେ ଏପରି ଲଢ଼େଇ ଚାଲିଥିବା ବେଳେ ଜମ୍ବୁ ଝରକାରେ ଡେଇଁ ଡେଇଁ ଆସି ଦୁର୍ଗ ଭିତରେ ପଶିଗଲା । ଲୋକମାନେ ତାକୁ ଦେଖି ଭୟରେ କାତର ହୋଇଗଲେ । ଏପରି ଅଦ୍ଭୁତ, ଭୟଙ୍କର ଜନ୍ତୁ ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ପାରି ନଥିଲେ । ସେ ସବୁ ଘରମାନଙ୍କରେ ପଶି ଲୋକମାନଙ୍କୁ ଆଘାତ କଲା ନାହିଁ ସତ, ମାତ୍ର ତାହାକୁ ଠେଲି ପକାଇ ଉପରେ କାଠଗୁଡ଼ାଏ ଲଦି ଦେଲା, ତାହା ଉପରେ ଟାବଲ୍ ଠାଏ, ତାହା ଉପରେ ବାଢ଼ସଠାଏ, ତାହା ଉପରେ ଗଣ୍ଠିଠାଏ, ଏପରି ଗୁଡ଼ାଏ ଲଦି ଦେଲା । ତା ପରେ ସେ ଜାଲିଘରମାନ ପାର ହୋଇ ତମ୍ବୁମାନଙ୍କରେ ପଶିଲା । ସର୍ଦ୍ଦାରମାନେ ତାକୁ ଦେଖି ଅଚେତ ହୋଇ ପଡ଼ିଗଲେ । ଜମ୍ବୁ ତମ୍ବୁମାନ ଭାଙ୍ଗି ସେମାନଙ୍କ ଉପରେ ପକାଇ ଦେଲା । ଏପରି ଭାବରେ କାଣ୍ଡ ଚାଲିଥିବା ବେଳେ ଦୁର୍ଗରେ ଯେ ଯୁଆଡ଼େ ଥିଲେ ସମସ୍ତେ ଜମ୍ବୁ ପଶିଥିବା ଖବର ଶୁଣି ଆଉ ଜୀବନର ଆଶା ରଖିଲେ ନାହିଁ ।

ସର୍ଦ୍ଦାର ମାଷ୍ଟରଙ୍କ ତମ୍ବୁ ଖୁବ୍ ବଡ଼ ; ତାହା ଦୁର୍ଗର ମଧ୍ୟ ସ୍ଥଳରେ ଥିଲା । ତହିଁରେ ମାଷ୍ଟର ଓ ତାଙ୍କ ଝିଅ ଚମ୍ପା ଶୋଇଥିଲେ । ଗୋଳମାଳ ଆରମ୍ଭରେ ସେମାନେ ଉଠିପଡ଼ି ଚାରିଆଡ଼େ ବୁଲି ସେମାନଙ୍କୁ ସାବଧାନ କରୁଥିଲେ ଏବଂ ତୋପ ବନ୍ଧୁକ ଫୁଟାଇବାକୁ ହୁକୁମ ଦେଉଥିଲେ ।

ଗୋଳମାଳ ଖୁବ୍ ଭୟଙ୍କର ହୋଇ ଉଠିବାରୁ ସେ ଦୁହେଁ ଆଉ ପଦାକୁ ନବାହାରି ଟେବୁଲତଳୁ ପାଟିକରି ସବୁ ବିପଦ କହୁଥିଲେ । ଏ ସମୟରେ ଡେସ୍କ ଭିତରେ ଜମ୍ବୁ ପଶିଥିବା ଖବର ଶୁଣି ସେମାନଙ୍କ ପାଟିରୁ ଆଉ କଥା ବାହାରିଲା ନାହିଁ । ସେ ଓ ଚମ୍ପା ଭୟରେ ଡେଇଁ ଯାଇ ଖଟ ଉପରେ ମୁହଁ ମାଡ଼ି ପଡ଼ି ରହିଲେ ଏବଂ ଭଗବାନଙ୍କୁ କାତର ସ୍ୱରରେ ପ୍ରାର୍ଥନା କଲେ । ଜମ୍ବୁ ଡେସ୍କ ଭିତରେ ପଶିଥିବାରୁ ଯେଉଁ କୋଳାହଳ ଉଠୁଥିଲା ବର୍ତ୍ତମାନ ତାହା ଅଧିକ ଜୋରରେ ଉଠିଲା । ଏମାନଙ୍କ ଭୟ ସେତିକି ପରିମାଣରେ ବଢ଼ିଗଲା ।

ମାଷ୍ଟରଙ୍କ ଡେସ୍କର ପଛ କବାଟ ଜୋରରେ ଫିଟାଇ ଦେଇ ଜମ୍ବୁ ଡେସ୍କ ଭିତରେ ପଶିଗଲା ଏବଂ ତା ଭିତରେ ଥିବା ମେଜ, ଚୌକି, ଟ୍ରଙ୍କ ଇତ୍ୟାଦି ଏଣେ ତେଣେ ଫିଙ୍ଗି ଭାଙ୍ଗି ପକାଇଲା । ଏ କଣରୁ ସେ କଣକୁ ପଶିଯାଇ ସବୁ ଦରଜାର ଛାନିପରଦା ଏଣେ ତେଣେ ଫୋପାଡ଼ି ଦେଲା ଏବଂ ଶେଷରେ ମାଷ୍ଟରଙ୍କ ଶୋଇବା ଘର ଭିତରେ ପଶିଲା । ମାଷ୍ଟର ଏତେବେଳକୁ ସାହସ ବାନ୍ଧି ତାଙ୍କ ରାଇଫଲ୍ ବନ୍ଧୁକ ଉଠାଇ ଜମ୍ବୁକୁ ଲକ୍ଷ୍ୟ କଲା ବେଳକୁ ସେ ଡେଇଁ ପଡ଼ି ତାଙ୍କ ହାତରୁ ବନ୍ଧୁକ ଛଡ଼େଇ ନେଲା ଏବଂ ଗୋଟାଏ କାହିଁରଅ କାଠି ଭାଙ୍ଗିଲା ପରି ତାକୁ ମଡ଼୍ ମାଡ଼୍ କରି ଭାଙ୍ଗିଦେଲା । ଏହାଦେଖି ମାଷ୍ଟରଙ୍କ ଚେତା ବୁଡ଼ିଗଲା । ସେ ଗଛ କାଟିଲା ପରି ତଳେ ପଡ଼ିଗଲେ । ଜମ୍ବୁ ତାଙ୍କ ଉପରେ ଖଟ ମେଜ ଚୌକି ଗୁଡ଼ାଏ ଲଦି ଦେଇ ଚମ୍ପା ଖଟକୁ ଗୋଇଠା ମାରି ଓଲଟାଇ ଦେଲା । ଚମ୍ପା ସେତେବେଳକୁ ଅଜ୍ଞାନ ହୋଇ ନ ଥିଲେହେଁ ଭୟରେ କାତର ହୋଇ ପଡ଼ିଥିଲା

ଏବଂ ସେହି ମୂର୍ତ୍ତି ଚାରିଆଡ଼େ ଚମ୍ପଲ ଯୋଡ଼ାଇ ହୋଇଥିଲା । ଟମ୍ପୁ ତାକୁ ଦେଖି ନ ପାରି ତା ଖଟ ଓଲଟାଇଲା ବେଳେ ସେ ତଳକୁ ଗଡ଼ିଗଲା ଏବଂ ଖଟ ତା ଉପରେ ପଡ଼ିଗଲା । ତାପରେ ଟମ୍ପୁ ଖୁବ୍ ଜୋରରେ ଧାଇଁ ପଦାକୁ ପଳେଇଗଲା ଏବଂ ବାହାରେ ଅନେକ ଝଡ଼ଝଞ୍ଜାର ଦୁର୍ଦ୍ଦଣ୍ଡରେ ପାହାଡ଼ ଉପରକୁ ଉଠିଗଲା । ସେଠାରେ ଠିଆ ହୋଇ ଏପରି ଗୋଟାଏ ଝଡ଼ ଉଠିଲା ଯେ ତହିଁରେ ସମୁଦାୟ ବନଭୂମି ଥରିଗଲା । ଚାହୁଁ ଚାହୁଁ ବାଘ, ଭାଲୁ, ହାତୀ ପ୍ରଭୃତି ହିଂସ୍ର ପଶୁମାନେ କୁଆଡ଼େ ଅଦୃଶ୍ୟ ହୋଇଗଲେ । ସବୁ ଗୋଳମାଳ ବନ୍ଦ ହୋଇ ଚାରିଆଡ଼ ଚୁପ୍ ଚାପ୍ ହୋଇଗଲା ।

---

# ଆଠ

ଅଳ୍ପ ସମୟ ପରେ ଭୋର ହେଲା । ଯେଉଁମାନେ ଅଜ୍ଞାନ ହୋଇ ପଡ଼ିଥିଲେ, ସେମାନେ ପାହାନ୍ତିଆ ଶୀତଳ ପବନ ପାଇ ଚେଇଁ ଉଠିଲେ । ସମସ୍ତେ ଉଠି ଗୃହ ଅଡ଼କୁ ଆଖି ପକାଇ ଦେଖିଲେ, ଆଉ କୌଣସି ଗୋଳମାଳ ନାହିଁ । ତେଣୁ ସେମାନେ ପଦାକୁ ବାହାରି ଆସି ବଣର ଗୃହ ଅଡ଼କୁ ଲକ୍ଷ୍ୟ କଲେ । ଗୋଟିଏ ହେଲେ ଜନ୍ତୁ ଦେଖା ନାହିଁ କିମ୍ବା ସେମାନଙ୍କ ଶବ୍ଦ ଶୁଣାଗଲା ନାହିଁ । ଜମ୍ବୁ ସଦଳବଳେ ଚାଲି ଯାଇଛନ୍ତି ବୋଲି ବୁଝି ସମସ୍ତେ ଆଶ୍ୱସ୍ତ ହୋଇ ପରସ୍ପର ଡକାଡକି ହେଲେ । ମାଷ୍ଟରଙ୍କ ଡାକରା ବେଳକୁ ସେ ଅଚେତ ହୋଇ ପଡ଼ିଥିଲେ । ତାଙ୍କ ଉପରୁ ଜିନିଷ ଯାକ ବାହାର କରି ତାଙ୍କୁ ସଚେତ କରାଗଲା । ସେ ଅନେକ ସମୟ ପରେ ଉଠି ବସିଲେ । ଚମ୍ପା ମଧ୍ୟ ସଚେତ ହୋଇ ଉଠିଲା । ଯେଉଁ ତମ୍ବୁ ସବୁ ନଷ୍ଟ ହୋଇ ନ ଥିଲା, ତା ଭିତରେ ଅନେକ ଲୋକ ଅଚେତ ହୋଇ ପଡ଼ିଥିଲେ । ସେମାନଙ୍କୁ ସଚେତ କରାଗଲା । ଶେଷରେ ଦେଖାଗଲା, କୋଡ଼ିଏ ଜଣ ପର୍ଯ୍ୟନ୍ତ ଲୋକ ମରି ଯାଇଛନ୍ତି । ପାଞ୍ଚ ଜଣଙ୍କର ପତ୍ତା ମିଳୁ ନାହିଁ । ସେମାନଙ୍କୁ ମାରି ବାଘମାନେ ଖାଇ ଯାଇଥିଲେ । ସମସ୍ତେ ଜମ୍ବୁ ବିଷୟରେ ନାନାଦି କଥା କୁହାକୁହି ହେଲେ । ସେ କାଲି ରାତିରେ ଯେଉଁ ଘଟଣାମାନ ଘଟିଗଲା ତାହା ଏମାନେ ଜୀବନରେ ଭୁଲି ପାରିବେ ନାହିଁ । ମାତ୍ର ଏତିକି ଆଶ୍ଚର୍ଯ୍ୟ କଥା ଯେ ଜମ୍ବୁ ତାହାକୁ ସୁଦ୍ଧା ମାରି ନ ଥିଲା କିମ୍ବା ତାହାକୁ ଆଘାତ ମଧ୍ୟ କରି ନ ଥିଲା । ଜମ୍ବୁର ଅସାଧାରଣ ଶକ୍ତି

ଏବଂ ତାର ଭୟଙ୍କର ଚେହେରା କଥା ଶୁଣି ସମସ୍ତେ ଚକିତ ହୋଇଗଲେ । ସେ କେଉଁ ଶ୍ରେଣୀର ଜୀବ, ତାହା କେହି ଠଉରା କରି ପାରିଲେ ନାହିଁ । ସମସ୍ତେ ଅନେକ ପରିମାଣରେ ମନରୁ ଭୟ ଦୂରକରି ଭାଙ୍ଗିଚୁରି ଯାଇଥିବା ଜମ୍ବୁ, ଅନ୍ୟଘର ଓ ପାଚେରୀମାନ ମରାମତି କଲେ ଏବଂ ପୁଣି ପୂର୍ବପରି ସଇବାଜ ହୋଇ କାମରେ ଲାଗିଗଲେ ।

ମାଷ୍ଟର ସମସ୍ତଙ୍କୁ ଏକାଠେଇ ବସାଇ କଅଣ କରିବା ବୋଲି ବିଚାର କଲେ । ସମସ୍ତେ ବହୁତ ଆଲୋଚନାପରେ ଠିକ୍ କଲେ ଯେ ଜମ୍ବୁକୁ ସହଜରେ ଧରି ହେବନାହିଁ । ଗୋଟାଏ ଟୋପ ଗୋଲି ଚଉଁରେ ଲୁହାକଡ଼ାର ଜାଲ ଛନ୍ଦବାକୁ ହେବ । ଜମ୍ବୁ ସେ ଟୋପରେ ପଡ଼ିଗଲେ ତାକୁ ଶକତ କରି ବାନ୍ଧି ଲୁହାପିଞ୍ଜରାରେ ପକାଇବାକୁ ହେବ । ନେ ହେଲେ ଜମ୍ବୁକୁ କୌଣସିମତେ ପାରି ହେବନାହିଁ । ଏବେ ପ୍ରଥମେ ଖୋଜିବାକୁ ହେବ, ଜମ୍ବୁ କେଉଁଠାରୁ ପାଣି ଖାଉଛି । ସେ ଜାଗା ଠିକ୍ କରିବାକୁ ଶିକାରୀମାନେ ଗୁପ୍ତରେ ଏଣେତେଣେ ବୁଲିଲେ । ଦୁଇମାସ ଅନୁସନ୍ଧାନ କରି ଦଳେ ଶିକାରୀ ଦେଖିଲେ, କେତେଠାରୁ ଛଅ ମାଇଲ ଦୂରରେ ଗୋଟାଏ ବଡ଼ ପାଟ ରହିଛି । ସେ ପାଟରେ ପାଣି ଖାଇବାକୁ ବଣର ଅନେକ ଜନ୍ତୁ ଆସୁଥିବାର ଚିହ୍ନ ଦେଖାଗଲା । ସେ ଚିହ୍ନ ଭିତରେ ଗୋଟାଏ ଅଦ୍ଭୁତ ପାଦଚିହ୍ନ ଦେଖାଗଲା । ତାହା ଅନେକ ପରିମାଣରେ ମଣିଷ ପାଦ ଚିହ୍ନପରି, ତେବେ ଖୁବ୍ ଓସାର । ଅଙ୍ଗୁଠିଗୁଡ଼ାକ ଖୁବ ଚଉଡ଼ା । ତାକୁହିଁ ଜମ୍ବୁର ପାଦଚିହ୍ନ ବୋଲି ଏମାନେ ଠିକ କଲେ ଏବଂ ସେ କଥା ଅସ ମାଷ୍ଟରଙ୍କୁ ଜଣାଇଲେ ।

ତାପରେ ସାହସୀ ଶିକାରୀମାନେ ତହିଁ ଅବଧନ ସେ ସ୍ଥାନକୁ ଯାଇ ନୂଆ ନୂଆ ଜନ୍ତୁମାନ ଦେଖିଲେ । ସେମାନଙ୍କ ଦଳର ଶିକାରୀ ବହୁତ ପରୀକ୍ଷା କରି ଦେଖିଲା, ଜମ୍ବୁ ଗୋଟାଏ ରାସ୍ତା ଦେଇ ପାଣି ପାନକୁ ବରାବର ଯିବା ଆସିବା କରନ୍ତି । ସେହି ରାସ୍ତାରେ ପନର ଫୁଟ ଗମ୍ଭୀରରେ ଗୋଟାଏ ଗାତ ଖୋଳା ହେଲା । ସେ ଗାତ ଭିତରେ ଲମ୍ବା ଜଞ୍ଜିରରେ ଗୋଟାଏ ଶକତ ଜାଲ କୌଶଳରେ ଟଙ୍ଗା ହେଲା । ଯେବେ ଭାଗ୍ୟକ୍ରମେ ଜମ୍ବୁ ସେ ଗାତ ଭିତରେ ପଡ଼ିଯିବ, ତେବେ ବାହାରି ଯିବାର କ୍ଷମତା ସେ ଜାଲକୁ ଛିଣ୍ଡାଇ ଦେବାର କୌଣସି ଆଶା ନାହିଁ । ସେମାନେ ଏ ଗାତ କାମ ଶେଷକରି ସେ ଜଙ୍ଗଲ ଭିତରେ ଏଣେତେଣେ ଅନ୍ତର ଶହେହାତ ପର୍ଯ୍ୟନ୍ତ ଗାତ ଖୋଳିଲେ । ତାପରେ ସମସ୍ତେ ଗଛ ଡାଳମାନଙ୍କରେ ଲୁଚିରହି ଅପେକ୍ଷା କରିବାକୁ ଲାଗିଲେ । ଯେତେବେଳେ ସବୁ ଜନ୍ତୁ ଓ ଜମ୍ବୁ ପାଣି ଖାଇବାକୁ ଯାଆନ୍ତି ତାହା ଏମାନେ ଅଦୌ ଜାଣନ୍ତି ନାହିଁ । ତେଣୁ ସେମାନେ ଦିନର ଅବଶିଷ୍ଟ ସମୟ ଓ ସାରାରାତ ଜଗି ରହିଲେ । ରାତ ହେଲାରୁ ଚନ୍ଦ୍ର ଆକାଶରେ ଅଳ୍ପ ସମୟ ପାଇଁ ଦେଖାଦେଲେ । ଆକାଶ ମେଘୁଆ ଥିବାରୁ ଅନ୍ଧକାର ଗୋଟାଏ ପ୍ରଭା କେବଳ ଗୃହଅଡ଼େ ପଡ଼ିଥିଲା, ତହିଁରେ ପାଟକୂଳ ଦେଶ ଦେଖା ଯାଉଥିଲା ।



## —ନଅ—

ରାତିର ପ୍ରଥମ ପ୍ରହରରେ ପ୍ରାୟ ଦୁଇଶହ ହାତୀ ପ୍ରଥମେ ପାଣି ପିଇବାକୁ ଆସିଲେ । ସେମାନେ କୌଣସି ପାଟି ତୁଣ୍ଡ ନ କରି ଚୁପ୍‌ଚାପ୍ ହୋଇ ଆସୁଥିବାରୁ ଜଣାଗଲା, ଜମ୍ବୁ ଦେବାଧନ୍ଦୁଏ ନିକଟରେ ଅଛନ୍ତି ଏବଂ ଏମାନେ ତା ଉପରେ ଚୁପ୍ ହୋଇ ବୁଲୁଛନ୍ତି । ହାତୀ ମାନଙ୍କ ପଛକୁ ଲାଗି ପ୍ରାୟ ପାଞ୍ଚଶହ ପର୍ଯ୍ୟନ୍ତ ମହାବଳ ବାଘ ଆସିଲେ । ତାଙ୍କ ପରକୁ ଲାଗି ଶହେ ପର୍ଯ୍ୟନ୍ତ ସିଂହ ଏବଂ ତାଙ୍କ ଅବଶେଷକୁ ଲାଗି ହଜାରେ ପର୍ଯ୍ୟନ୍ତ ଚିତା ବାଘ ଆସିଲେ । ଏତେଗୁଡ଼ାଏ ଭୀଷଣ ପଶୁ ଏକ ସଙ୍ଗେ ଆସିଲେ ମଧ୍ୟ ସେମାନଙ୍କର କୌଣସି ଗୋଳମାଳ ଶୁଣାଯାଉ ନ ଥିଲା । କେବଳ ବାୟୁମଣ୍ଡଳ ଗୋଟାଏ ଅଜ୍ଞାତ ଭୟରେ ପୂରି ରହିଥିଲା । ସମସ୍ତେ ପଟକୂଳକୁ ଆସିଲା-ମାତ୍ରେ କେତେକ ଝୋପଝାଡ଼ରେ ପଶିଗଲେ । ସେମାନଙ୍କ ଭିତରେ ଗଗନ ଭୁଷି ପଡ଼ିଲା । ତାଙ୍କ ପଶିଯିବା ଦେଖି ଅନ୍ୟ ଜନ୍ତୁମାନେ ଆଉ ପାଣି ପିଇବେ କଣ, ଭୟଙ୍କର ରଡ଼ୁଛନ୍ତି ଦୁଲ୍‌ଦାଲ୍ ଭୁସ୍ ଭାସ୍ କେଉଁ ଯେ ପୁଅଡ଼େ ପଳାଇଗଲେ । ଏହି ଗୋଳମାଳ ଭିତରେ ଜମ୍ବୁ ତା ସ୍ତ୍ରୀଦେଇ ପାଣି ପିଇବାକୁ ଆସୁ-ଆସୁ ତା ପାଇଁ ତିଆରି ହୋଇଥିବା ଝୋପରେ ପଶିଗଲା । ସଙ୍ଗେ ସଙ୍ଗେ ଜଞ୍ଜିରଜାଲ ତାକୁ ଗୁଡ଼ାଇ ବାନ୍ଧି ପକାଇଲା । ଜମ୍ବୁର ରଣଘାଟରେ ବଣପର୍ବତ ଥରିଗଲା । ଜମ୍ବୁ ସେ ବନ୍ଧନରୁ ଖସି ଯିବାପାଇଁ ଯେତେ ଉଠପଡ଼ କଲା, କୌଣସିମତେ ପାରିଲା ନାହିଁ । ଓଲଟି

କଣ୍ଠେଇରୁ ଅତୁଟ ଚୋପରେ କଟି ହୋଇଗଲା । ଜମ୍ବୁ ସ୍ୱତତମାଙ୍କ ଚେଷ୍ଟା କରି ମଧ୍ୟ ମୋଟେ ଖସିଯାଇ ପାରିଲା ନାହିଁ ।

ସକାଳ ହେଲାରୁ ଶିକାରୀମାନେ ବଡ଼ ବଡ଼ ବନ୍ଧୁକ ଓ ତେଜ ସ-ମାନଧରି ଗଛମାନଙ୍କରୁ ତଳକୁ ଓହ୍ଲାଇଲେ । ଟୋପମାନଙ୍କରେ ପଡ଼ିଥିବା ଜନ୍ତୁମାନଙ୍କର ଯେଉଁ ରଡ଼ି, ତାହା ଶୁଣିଲେ ଭୟରେ ଛାତି ଫାଟିଯିବ । ସମସ୍ତ ରଡ଼ିଠାରୁ ଜମ୍ବୁର ରଡ଼ି ବଳି ପଡ଼ୁଥାଏ । ତେଣୁ ଶିକାରୀମାନେ ଖୁବ୍ ସାବଧାନରେ ଆସି ଟୋପମାନ ଗୋଟି-ଗୋଟିକରି ଦେଖିଲେ । କେଉଁ ଟୋପରେ ଗୋଟାଏ କେଉଁ ଟୋପରେ ଦୁଇଟା ଜନ୍ତୁ ପଡ଼ିଯାଇ ବାହାରିଯିବାକୁ ଛଟପଟ ହେଉଥିଲେ । ତାପରେ ସେମାନେ ଜମ୍ବୁ ପଡ଼ିଥିବା ଟୋପ ନିକଟକୁ ଯାଇ ଦେଖିଲେ, ଜମ୍ବୁ ଯେପରି ଜାଲରେ ଛନ୍ଦାହୋଇ ପଡ଼ିଛି, ସେଥିରୁ ତାର ହାତ ଗୋଡ଼ ଖସିବାର କୌଣସି ଉପାୟ ନାହିଁ । ତେଣୁ ସେମାନେ ନାନା କୌଶଳରେ ଜମ୍ବୁକୁ ଉପରକୁ ଆଣିଲେ । ଜମ୍ବୁ ଜଞ୍ଜିର ଛିଣ୍ଡେଇ ବାହାରି ପିବାକୁ ଯେତେ ଚେଷ୍ଟା କଲେ ମଧ୍ୟ ପାରିଲା ନାହିଁ । ଶେଷରେ ସେ ହାଲିଆ ହୋଇ ପଡ଼ିଗଲା । ସେତେବେଳକୁ ଡେଭି ପାଠକ୍ଲବର ଅଧ ମାଇଲ୍ ଏ ନିକଟକୁ ଚାଲି-ଆସିଥିଲେ । ଶିକାରୀମାନେ ଜମ୍ବୁକୁ ଲୁହାଛଡ଼ରେ ତିଆରି ହୋଇଥିବା ଗୋଟାଏ ଶକତ ପିଞ୍ଜରା ଭିତରେ ପୁରାଇ ଦେଲେ । ତା ତଳେ ଲରି ଚକପରି ଚାରିଗୋଟା ଲୁହାଚକ ଲାଗିଥିଲା । ଭୋଡ଼ିଏ ଜଣ ଶିକାରୀ ବଡ଼ କଷ୍ଟରେ ତାକୁ ଭିଡ଼ ଭିଡ଼ ଡେଭି ପାଖକୁ ନେଲେ । ଜମ୍ବୁ ଧରା ହୋଇଥିବାରୁ ଚାରିଆଡ଼େ ମହାଆନନ୍ଦ ଖେଳିଗଲା ।

ମାଷ୍ଟର ତାଙ୍କ ଝିଅକୁ ସାଙ୍ଗରେ ନେଇ ଜମ୍ମୁକୁ ଆସି ଦେଖିଲେ । ସେମାନଙ୍କ ଆନନ୍ଦ ଦେଖିବ କିଏ ?

ଏଣେ ଶିକାରୀମାନେ ସବୁ ଝୋପମାନଙ୍କରୁ ଜନ୍ତୁମାନଙ୍କୁ ବଡ଼ କୌଶଳରେ ବାଜି ପଦାକୁ ବାହାର କଲେ । ମୋଟାମୋଟି ହିସାବରୁ ଦେଖାଗଲା ଯେ ଚାଳିଶିଟା ହାତୀ, ଛପନଟା ମହାବଳ ବାଘ, ସତର ଗୋଟା ସିଂହ ଏବଂ ଅଠରଶୀ ଗୋଟା ଶିଆଳ ସେଦିନ ଧରାହେଲେ । ଏସବୁ ଜୋଟାଏ ସୌଭାଗ୍ୟ ଲୋକଙ୍କୁ ସହଜରେ ମିଳେନାହିଁ । ମାଷ୍ଟର ବଡ଼ ଭାଗ୍ୟବାନ, ସେ ଜମ୍ମୁକୁ ଧରିବାକୁ ଏତେ ଟଙ୍କା ପଇସା ବ୍ୟୟକରି ଜୀବନକୁ ପାଣିଛଡ଼ାଇ ଏତେଦୂର ଅରଣ୍ୟ ଭିତରକୁ ଆସିଥିଲେ । ଜମ୍ମୁକୁ ଧରିବା ସଙ୍ଗେ ସଙ୍ଗେ ଏତେଗୁଡ଼ାଏ ମୂଲ୍ୟବାନ ପଶୁ ପାଇଲେ । ସେ ଯଦି ଏ ସମସ୍ତଙ୍କୁ ନେଇ ନିରାପଦରେ ନାଗପୁର ଯାଇ ପାରିବେ, ତାଙ୍କର କମ୍ ସୁଖ୍ୟାତି ଓ କମ୍ ଅର୍ଥଲାଭ ହେବନାହିଁ । ଯାହାହେଉ ସବୁଜନ୍ତୁ ନିରାପଦରେ ପିଞ୍ଜରାମାନଙ୍କରେ ଭର୍ତ୍ତିହୋଇ ଟେଣ୍ଟ ନିକଟକୁ ଅଣାଗଲେ । ଚମ୍ପାର ଆନନ୍ଦ କହିଲେ ନ ସରେ । ସେ ଟିକିଏ ଏଣେ ତେଣେ ଧାଇଁ ବୁଲିଲା ଏବଂ କାହାକୁ ଫଳଟାଏ କାହାକୁ ମାଂସ ମେଞ୍ଚାଏ ବାଣ୍ଟିବାରେ ଲାଗିଲା । ଜନ୍ତୁଗୁଡ଼ାକ ସ୍ୱାଧୀନତା ହରାଇ ବନ୍ଧନରେ ପଡ଼ିଥିବାରୁ ତାର ଉପହାର ଗ୍ରହଣ କଲେନାହିଁ । ମାତ୍ର ଆଶ୍ଚର୍ଯ୍ୟର ବିଷୟ, ଚମ୍ପା ଜମ୍ମୁ ନିକଟକୁ ଗଲାବେଳେ ସେ ବାରମ୍ବାର ଆନନ୍ଦସୂଚକ ଶବ୍ଦ କରୁଥାଏ ଏବଂ ଚମ୍ପାର ଉପହାର ଗ୍ରହଣ କରି ସଙ୍ଗେ ସଙ୍ଗେ ଖାଇ ଦେଉଥାଏ । ଅନ୍ୟମାନଙ୍କଠୁ ତା

ନାବଟିକୁ ଗଲାବେଳେ ସେ ଭୟଙ୍କର ଶବ୍ଦ କରି ସତେ ଯେପରି ପିଞ୍ଜରା ଭାଙ୍ଗି ପଳାଇବ, ଏପରି ଭାବ ଦେଖାଉଥାଏ ।

ଜମ୍ମୁ ସହ ଅନ୍ୟ ଜନ୍ତୁମାନଙ୍କ ପିଞ୍ଜରାମାନ କାଠଗଡ଼ା ମଧ୍ୟକୁ ଅଣାଯାଇ ସଜାଇ ରଖାଗଲା ଏବଂ ମିରଗ ସମ୍ବର ମାରି ସେମାନଙ୍କୁ ଖାଇବାକୁ ଦିଆଗଲା । ଜମ୍ମୁ ଗୋଟିଏ ସମ୍ବର ଦୁଇଦିନରେ ଖାଉଥାଏ । ଅନ୍ୟ ଜନ୍ତୁମାନେ କିଏ ଚାରିଦିନରେ କିଏ ତିନିଦିନରେ ଏପରି ଖାଉଥାନ୍ତି । ହାତୀମାନେ ବଡ଼ ବଡ଼ ଗଛମାନଙ୍କରେ ବନ୍ଧା ହୋଇଥିଲେ । ସେମାନଙ୍କୁ ଡାଳମାନ ଖାଇବାକୁ ଦିଆ ଯାଉଥିଲା ।

ସେ ଦିନ ତମ୍ବୁ ଭିତରେ ଗୋଟାଏ ବଡ଼ ଉତ୍ସବ ଲାଗିଲା । କେତେ ନାଚତାମସା ହେଲା, କେତେ ଖେଳ ହେଲା ଏବଂ ଖୁବ୍ ବଡ଼ ବଣ ଭୋଜିଟାଏ ହେଲା । ମାଷ୍ଟର ସବୁ ଶିକାରୀଙ୍କୁ ଶହେଟଙ୍କା କରି ବକସିସ୍ ଦେଲେ । ଆନନ୍ଦରେ ଚାରିଅଡ଼ ଫାଟି ଉଠିଲା । ଏଥି ପୂର୍ବରୁ ଘଟିଥିବା ବିପଦମାନ ସମସ୍ତେ ଭୁଲି ଗଲେ । ହସି ଖେଳି ପାଞ୍ଚଦିନ କଟିଗଲା ।

---

## — ତଣ —

ଷଷ୍ଠଦିନ ସମସ୍ତେ ଯାତ୍ରା ଆରମ୍ଭ କଲେ । ଜମ୍ବୁସଙ୍ଗ ଜନ୍ତୁମାନେ ତଳ କରିଥିବା ପିଞ୍ଜରାମାନଙ୍କରେ ଭର୍ତ୍ତି ହୋଇଗଲେ । ଅନ୍ୟ ଲୋକମାନେ ଜିନିଷପତ୍ର ସବୁ ଧରି ଚାଲିଲେ । ପ୍ରଥମ ଦିନ ଛଅମାଇଲ ଯାଇ ଗୋଟାଏ ଜାଗାରେ ରାତ୍ରି ବିଶ୍ରାମ କଲେ । ତା ଆରଦିନ ଆଠମାଇଲ ଚାଲିଗଲେ । ଯାଉ ଯାଉ ବାଟରେ ନାଳ ବା ଖୋଲା ପଡ଼ିଲେ ତାହା ସବୁ ପାର ହୋଇ ହୋଇ ଅନେକ ସମୟ ଲାଗୁଥିଲା । ତେଣୁ ସେଦିନ ବେଶି ବାଟ ଯାଇ ପାରୁ ନ ଥିଲେ । ଯେଉଁ ଦିନ ନାଳ ବା ଖୋଲା ନ ପଡ଼ି ଖାଲି ସମାନଥ ଭୂଇଁ ପଡୁଥିଲା ସେଦିନ ଦଶମାଇଲ ଚାଲି ଯାଉଥିଲେ ।

ଦିନେ ରାତିରେ ସମସ୍ତେ ଶୋଇ ରହିଥିବା ସମୟରେ ଡେଢ଼ଶହ ପର୍ଯ୍ୟନ୍ତ ହାତୀ ଆସି ହଠାତ୍ ଆକ୍ରମଣ କଲେ ଏବଂ ଅନେକ ଘର ଓ ଜିନିଷପତ୍ର ଭାଙ୍ଗି ପକାଇଲେ । ତା ପରେ ବନ୍ଧା ହୋଇଥିବା ହାତୀମାନଙ୍କ ମଧ୍ୟରୁ ଦଳର ହାତୀଙ୍କ ବନ୍ଧା ଫିଟାଇ ଦେବାରୁ ସେମାନେ ଖସି ପଳାଇଗଲେ । ଏ ଅବସ୍ଥା ଦେଖି ବାଣୁଆମାନେ ତୋପ ବନ୍ଧୁକ ଦାଗିଲେ । ଗୁଡୁମ୍ ଗୁଡୁମ୍ ତୋପ ଆବାଜରେ ଚାରିଆଡ଼ ଦୁଲୁକି ଗଲା । ସେ ଘାତରେ ଅନେକ ହାତୀ ମରି ପଡ଼ିଗଲେ । ଆଉ ଅନେକ ହାତୀ ସେ ବାଟରେ ଅଟକି ପଳାଇ ଗଲେ । ସକାଳେ ଦେଖାଗଲା, ସେ ଆଘାତରେ ପନ୍ଦରଘର ହାତୀ ମରି ଯାଇଥିଲେ ଏବଂ ବନ୍ଧା ହାତୀରୁ ଦଶଘର ଖସି ପଳାଇ

ପାଉଥିଲେ । ଗୃହାଏ ନାଳୀଘର ଭିତରେ ଯାଉଥିଲେ ମଧ୍ୟ କୌଣସି ଲୋକ ଅଘାତ ପାଉନଥିଲେ ।

ହିସାବ କରି ଦେଖାଗଲା, ଅଳ୍ପ ନଅଦିନ ପରେ ସେମାନେ ବର୍ଣ୍ଣସୀମା ପାର ହେବେ । ଏ ନଅଦିନ ସେମାନଙ୍କ ପକ୍ଷରେ ଯୁଗେ ପରି ଲାଗିଲା । ଜମ୍ବୁ ସହ ଯେଉଁ ଜନ୍ତୁମାନେ ଧରା ହୋଇଥିଲେ ସେମାନେ ଏହି ମହାବଣର ମାଲିକ । ଜମ୍ବୁ ସେମାନଙ୍କର ରାଜା, ଅଳ୍ପ ଜମ୍ବୁ ଓ ମାଲିକମାନେ ଧରାହୋଇଥିବାରୁ ଜନ୍ତୁମାନଙ୍କ ଭିତରେ ହଇଚଇ ପଡ଼ି ଯାଇଥିବ । ସେମାନଙ୍କୁ ମୁକୁଳେଇ ନେବାକୁ ଜନ୍ତୁମାନେ ନିଶ୍ଚୟ ଚେଷ୍ଟା କରିବେ ଏବଂ ପ୍ରାଣପଣେ ଆକ୍ରମଣ କରିବେ । ହାତୀମାନେ ସେମାନଙ୍କ ଡାମକରଦେଇ ଗଲେଣି । ଅନ୍ୟମାନେ ଆସିବା ଖୁବ୍ ସମ୍ଭବ । ତାହାହେଲେ ବିପଦ ଉପରେ ବିପଦ ଭୋଗି ଏମାନେ ନିରାପଦରେ ନାଗପୁରରେ ପହଞ୍ଚିବେ ବୋଲି ନିର୍ଭର ଆଶା କରିପାରିଲେ ନାହିଁ । ତେଣୁ ଯେତେ ମାଇଲ ସେମାନେ ଗଲେ, ସେତେ ମାଇଲ ଲାଭ କଲେ ବୋଲି ମନେ କଲେ । ଏହାରେ ଭୟ ଅଶାନ୍ତି ଭିତର ଦେଇ ସେମାନେ ନଅଦିନର ରାସ୍ତା ପାର ହୋଇ ବଣର ଶେଷ ସୀମାରେ ଯାଇ ପହଞ୍ଚିଲେ । ଏଣିକି ବଣର ଭୟ ଅଳ୍ପ ରହିଲାନାହିଁ । ସେମାନେ ଛଅଦିନ କାଳ ଖୋଲାରାସ୍ତାରେ ଚାଲି ବସ୍ତି ନିକଟରେ ଯାଇ ହେଞ୍ଚିଲେ । ସେଠାରୁ ବହୁତ ଗାଡ଼ି ସଂଗ୍ରହ କରି ତହିଁରେ ସମସ୍ତେ ବସିଲେ ଏବଂ ଖୋଲା ଶକଡ଼ମାନଙ୍କରେ ପିଞ୍ଜରାମାନଙ୍କୁ ରଖିଲେ । ଜମ୍ବୁର ପିଞ୍ଜରା ଖୁବ୍ ବଡ଼ ଥିବାରୁ ତାହା

ଶଗଡ଼ରେ ଧରେଇ ନାହିଁ । ତାଙ୍କୁ ସେହୁପର ଉଠ ଉଠି ନେଲେ । ଗୁରୁବଦନ ପରେ ସମସ୍ତେ ଭଲରେ ଯାଇ ନାଗପୁର ସହରରେ ପହଞ୍ଚିଲେ । ନାଗପୁରରୁ ଯାଇ ପୁଣି ସେଠାକୁ ଫେରିବାକୁ ସେମାନଙ୍କୁ ଦେଢ଼ମାସ ଲାଗିଲା । ଏ ଯାତ୍ରାରେ ମାଷ୍ଟରଙ୍କର ଦଶହଜାର ଟଙ୍କା ଉଡ଼ିଗଲା ।

---

## —ଏଗାର—

ଜମ୍ବୁ ଧରାହୋଇଥିବା ସମ୍ବାଦ ଚାରିଆଡ଼େ ଜଙ୍ଗଲ ପରି ଖେଳିଗଲା । ଲୋକେ ତାକୁ ଦେଖିବାକୁ ଦଶ ପନ୍ଦର କୋଶ ଦୂରରୁ ଧାଇଁଲେ । ବାଟରେ ଯାତାୟାତ ଗହଳି ହୋଇଗଲା । ଏତେ ଲୋକ ଭିଡ଼ ଭିତରେ ଏମାନେ ଚାଲିବା ଓ ଶଗଡ଼ ସବୁ ଚଳାଇବା ଅସମ୍ଭବ ହୋଇପଡ଼ିଲା । ବଡ଼ କଷ୍ଟରେ ସମସ୍ତେ ଭିଡ଼ ଭିତର ଦେଇ ଚାଲିଲେ । ଏ ଲୋକଗହଳି ଦେଖି ଜମ୍ବୁ ଓ ଅନ୍ୟ ଜନ୍ତୁମାନେ ଖୁବ ରାଗିଗଲେ ଏବଂ ନିଜ ନିଜ ପିଞ୍ଜରାସବୁ ଭାଙ୍ଗି ପକାଇବାକୁ ବସିଲେ । ଜମ୍ବୁର ଭୟଙ୍କର ରଡ଼ି ଶୁଣି ଲୋକେ ଅନେକ ଦୂରକୁ ପଳେଇ ଯାଉଥିଲେ । ସେ ସୁଯୋଗରେ ଗାଡ଼ିସବୁ ଅନେକ ଦୂର ଚାଲିଯାଉଥିଲା । ଖବରକାଗଜବାଲା ଦଳ ଦଳ ହୋଇ ଜମ୍ବୁକୁ ଦେଖିବାକୁ ଆସିଲେ ଏବଂ ତାକୁ ଦେଖି ଓ ତାକୁ ଛପର ଧରିଲେ ତାହାର ସବୁ ଖବର ମାଷ୍ଟରଙ୍କଠାରୁ ଶୁଣି ତାହାସବୁ ଖବର-କାଗଜମାନଙ୍କରେ ଛାପିଦେଲେ । ଜମ୍ବୁର ଫଟୋ ମଧ୍ୟ ନିଆଯାଇ ଖବରକାଗଜମାନଙ୍କରେ ଛପାହେଲା ।

ଦୂରଦେଶମାନଙ୍କର ଲୋକେ ଜମ୍ବୁ ଧରାହୋଇଥିବା ଖବର ଶୁଣି ଏବଂ ତାର ଫଟୋ ଖବରକାଗଜମାନଙ୍କରେ ଦେଖି ବହୁତ ଆଶ୍ଚର୍ଯ୍ୟ ହୋଇଗଲେ । ତାକୁ ନାଗପୁରଠାରେ ଦେଖିବାକୁ ଶହ ଶହ ଲୋକ ରେଳରେ ବସି ଧାଇଁଲେ । ନାଗପୁର ସହର ଭିତରେ ଭାରି ଲୋକଭିଡ଼ ହେଲା । ଶହ ଶହ ହୋଟେଲ ଶହ ଗୁଡ଼ିଆ

ଦୋକାନ ଖୋଲିଗଲା । ଦୋକାନ ବଜାର ବହୁତ ବଢ଼ିଗଲା । ସାଧାରଣ ଲୋକମାନଙ୍କର ବ୍ୟବସାୟ ଏତେ ବଢ଼ିଲା ଯେ ଟଙ୍କା ରଖିବାକୁ ସେମାନଙ୍କୁ ଜାଗା ମିଳିଲାନାହିଁ । ତେଣୁ ସରକାର ଗୋଟାଏ ବ୍ୟାଙ୍କ ଖୋଲିଦେବାରୁ ଲୋକେ ସେମାନଙ୍କ ଲାଭ ଟଙ୍କାମାନ ତହିଁରେ ହଜାର ହଜାର ସଂଖ୍ୟାରେ ଜମା କରିଦେଲେ ।

ଏଣେ ମାଷ୍ଟର ଜମ୍ବୁ ଓ ଅନ୍ୟ ଜନ୍ତୁମାନଙ୍କୁ ସହର ଭିତରକୁ ଅଣି ଗୋଟାଏ ପଥର ପାଚେରି ଭିତରେ ରଖିଲେ । ସେ ଜମ୍ବୁକୁ ସର୍କସରେ ଦେଖାଇ ଟଙ୍କା ରୋଜଗାର କରିବାକୁ ଅଣିଥିଲେ । ଲୋକେ ତାକୁ ଦୋକାନରେ ଦେଖିଲେ, ଆଉ ସର୍କସ ଦେଖିବାକୁ ଆସିବେ ନାହିଁ କି ଟଙ୍କା ରୋଜଗାର ହେବ ନାହିଁ । ଏହା ଭାବି ମାଷ୍ଟର ତାକୁ ଓ ଅନ୍ୟ ଜନ୍ତୁମାନଙ୍କୁ ପାଚେରି ଭିତରେ ଲୁଚେଇ ରଖିଲେ ଏବଂ ସମସ୍ତଙ୍କୁ ଖୁଆଇ ପିଆଇ ଓ ବିଶ୍ରାମ ଦେଇ ସାନ୍ତ୍ୱନା କଲେ । ରାସ୍ତାରେ ଧକଡ଼ ଚକଡ଼ ହୋଇ ଆସିବାରେ ଜମ୍ବୁ ଦେହ ପୀଡ଼ା ହୋଇ ଯାଇଥିଲା । ସେ ଓ ଅନ୍ୟ ଜନ୍ତୁମାନେ ଗୁଡ଼ାଏ ଖାଇ ପିଇ ଖୁବ୍ ବିଶ୍ରାମ ଓ ଖୁବ ଆରାମ ଭୋଗକଲେ । ମାଷ୍ଟର ଓ ତାଙ୍କ ସଙ୍ଗୀମାନେ ବି ବିଶ୍ରାମ ନେଲେ । ଦୁଇଦିନ ବିଶ୍ରାମ ନେଲା ପରେ ସମସ୍ତେ ଖୁବ୍ ସୁସ୍ଥ ହୋଇଗଲେ ।

ଜମ୍ବୁ ଧରାହେବା ଦିନଠାରୁ ଏପର୍ଯ୍ୟନ୍ତ ଚମ୍ପା ଛଡ଼ା ଆଉ କାହା ହାତରୁ ଆହାର ଖାଉ ନ ଥିଲା । ଯେ ଯେତେ ଖାଇବାକୁ ଦେଲେ ବି ତା ନିକଟକୁ ଗଲେ ସେ ଖାଲି ମାରି ଗୋଡ଼ାଉଥିଲା । ତା ଭୟରେ ସର୍ଦ୍ଦାରମାନେ ତା ପାଖରେ ପଶି ପାରିଲେ ନାହିଁ । କିନ୍ତୁ

ଚମ୍ପା ଘରେ ଜମ୍ବୁ ଲହୁଣୀ ପରି କୋମଳ ହୋଇ ଯାଉଥିଲା ଏବଂ ଚମ୍ପା ହାତରୁ ଅହାର ନେଇ ଅଗ୍ରହରେ ଖାଉଥିଲା ।

ତା ଦେହରୁ ଏପର୍ଯ୍ୟନ୍ତ ଲୁହାଜଞ୍ଜିର ଫିଟା ହୋଇ ନ ଥିଲା । ଅଉ ବେଶିଦିନ ତା ଦେହରେ ରହିଲେ ସେ ଖାଲେ ବେମାର ହୋଇ ମରିଯିବ ଏଥିପାଇଁ ତା ଦେହରୁ ସେ ଜାଲଟା ଫିଟାଇବାକୁ ସର୍ଦ୍ଦାରମାନେ ବହୁତ ଚେଷ୍ଟା କଲେ । ମାତ୍ର ସେମାନେ କୌଣସି-ମତେ ତା ପିଞ୍ଜରା ନିକଟକୁ ଯାଇ ପାରିଲେ ନାହିଁ । ମାଷ୍ଟରଙ୍କର ଏଥିପାଇଁ ମହା ସ୍ତ୍ରୀଲେଣୀ ପଡ଼ିଲା । କଅଣ କରିବେ କିଛି ଠିକ୍ କରିପାରିଲେ ନାହିଁ । ଚମ୍ପା ସେ ପିଞ୍ଜରା ଭିତରକୁ ଯାଇ ଜଞ୍ଜିରଟା ଫିଟାଇ ଦେବାକୁ କହିଲା । ମାତ୍ର ମାଷ୍ଟର ସେଥିରେ ସାହସ କରିପାରିଲେ ନାହିଁ । ତା ଭଲେ ଚମ୍ପା ଅଜ ପ୍ରାଣ ପାଇ ପାରିବ ନାହିଁ, ଜମ୍ବୁ ତାକୁ ମାରି ଛିଚ୍ଛିଡ଼ି କରିଦେବ । ମାତ୍ର ଚମ୍ପା ତାହା ମାନିଲା ନାହିଁ । ସେ ଖୁବ୍ ସାହସ ବାନ୍ଧି ପିଞ୍ଜରାର ଦୁଆର କବାଟ ଫିଟାଇ ପଶିଗଲା ଏବଂ ଜମ୍ବୁ ଦେହରୁ ସମୁଦାୟ ଲୁହା ଜଞ୍ଜିର କୌଶଳରେ ଫିଟେଇ ଦେଲା । ଜଞ୍ଜିର ଫିଟିଯିବାରୁ ଜମ୍ବୁ ମହା ଅନନ୍ଦର ଭାବ ଦେଖାଇଲା ଏବଂ ଖୁସିରେ କୁହାଟ ମାରି ଚମ୍ପାର ହାତ ଦୁଇଟିକୁ ଧରି ଖୁବ୍ ନାଚିଲା । ଏ ଦୃଶ୍ୟ ଦେଖି ମାଷ୍ଟର ଓ ତାଙ୍କ ସର୍ଦ୍ଦାରମାନେ ବହୁତ ଅନନ୍ଦତ ହେଲେ ମଧ୍ଯ ମାଷ୍ଟରଙ୍କ ମନରେ ସୁଖ ରହିଲା ନାହିଁ । ସେ ସବୁବେଳେ ଚମ୍ପାର ପ୍ରାଣ ଅଶଙ୍କା କଲେ । ସେଦିନ ଚମ୍ପା ଜମ୍ବୁକୁ ବହୁତ ଫଳମୂଳ ପଲେଙ୍କ ଓ ମାଂସ ଖାଇବାକୁ ଦେଲା । ଚମ୍ପା ଏ ମଧ୍ୟରେ ଜମ୍ବୁକୁ ଟେବଲରେ ଦୁଧ ଓ ପାଣି ପିଇବା ଶିଖେଇ ଥିଲା । ତେଣୁ ଜମ୍ବୁ ଅଜ

ନୁହେଁ ବୁଢ଼ୀର ପାଣି ନ ପିଇ ପାଣି ଓ ଦୁଧ ମିଶେଇକି ଖାଇ ଅଭ୍ୟାସରେ ପିଉଥିଲା । ସେଦିନ ଚମ୍ପା ତାକୁ ପାଞ୍ଚସେର ଦୁଧ ପିଆଇ ଦେଲା । ସେଦିନ ଜମ୍ବୁର ଶୋଷାଏ ଆନନ୍ଦର ଭାବ ବହୁତ ବଢ଼ିଯିବାର ଜଣାଗଲା । ସେ ଚମ୍ପାର ହାତ ଖାପୁଲାକୁ ଶୁଣ୍ଢ ଦେଉଥାଏ, ଗୁଣ୍ଡି ଘଷାଉଥାଏ ଏବଂ ପିଠି ଅଁଟେସି ଦେଉଥାଏ । ହୃଦୟର ଏପରି କୋମଳ ଭାବ ସମୟେ ସମୟେ ପଶୁମାନଙ୍କଠାରେ ବି ଦେଖାଯାଏ । ଜମ୍ବୁ ଭଳି ବିରାଟ ପଶୁ ଚମ୍ପାର ଲହୁଣୀ ପରି କୋମଳ ଭାବସବୁରେ ଆକୃଷ୍ଟ ହେବା ଏବଂ ସେହିଭଳି ଭାବସବୁ ନିଜେ ଦେଖାଇବା କିଛି ବିଚିତ୍ର କଥା ନୁହେଁ ।

ଜମ୍ବୁ କେତେ ବୀର, କେତେ କଠୋର, ପୁଣି କେତେ କୋମଳ ପ୍ରାଣ, ତାହାତ ନାନାଘଟଣାରେ ଅମ୍ଭେମାନେ ଦେଖିଲେଣି । ତଳର ଗୋଟିଏ ଦୁଇଟି ଉଦାହରଣରୁ ଅମ୍ଭେମାନେ ଦେଖିପାରିବା, ସେ କେତେ ରାଗୀ ଓ ପ୍ରତିହିଂସା ପରାୟଣ । ସର୍ଦ୍ଦାରମାନେ ଏଣିକି ଜମ୍ବୁକୁ ନାଚ ଶିଖେଇ ସର୍କସରେ ଠିଆ କରିବେ ବୋଲି ସ୍ଥିର କଲେ । ସେମାନେ ସିଂହ, ବାଘ, ଭାଲୁ, ହାତୀ, ଘୋଡ଼ା ପ୍ରଭୃତି ପଶୁମାନଙ୍କୁ ନାନାବିଧ ଖେଳ ଶିଖେଇ ସର୍କସରେ ଦେଖାଉଥିଲେ । ସେଥିପାଇଁ ସେମାନଙ୍କୁ ଅବଶ୍ୟ ଚମଡ଼ା ଚାବୁକରେ ପ୍ରହାର କରିବା ଆବଶ୍ୟକ ହେଉଥିଲା । ପଶୁମାନେ ସେ ପାହାରକୁ ଦେଖି ସର୍ଦ୍ଦାରମାନଙ୍କ ପାଖରେ ନଇଁ ପଡ଼ୁଥିଲେ ଏବଂ ସେମାନେ ଯାହା କହୁଥିଲେ ତାହା କରୁଥିଲେ । ଏବେ ଜମ୍ବୁକୁ ସେହିପରି ନାଚ ଓ ଖେଳ ଶିଖେଇବାକୁ ଦରକାର ପଡ଼ିବାରୁ ସେମାନେ ଲମ୍ବ ଲମ୍ବ କୋରଡ଼ା-ମାନ ଧରି ଜମ୍ବୁର ପିଞ୍ଜରା ଚାରିପଟେ ଘେରି ଠିଆ ହେଲେ ଏବଂ



Digitized by srujanika@gmail.com

ଭୋବଡ଼ା ହଳଇ ନାଶବାକୁ ସଙ୍କେତ ଦେଲେ । ଜମ୍ବୁ ସେମାନଙ୍କୁ ଏପରି ଅବସ୍ଥାରେ ଦେଖି ସ୍ୱରରେ ଢଙ୍କଟଲ ଏବଂ ଭୟଙ୍କର ଗର୍ଜନ କରି ସେମାନଙ୍କୁ ତଲ୍ଲେର୍ଡୋକୁ ଲାଗିଲା । ସେମାନେ ତାର ଏ ଘଟଣାରେ ବିଚଳିତ ନ ହୋଇ ଭୋବଡ଼ା ଶଢ଼ାଇଲେ ଏବଂ ତାକୁ ଚୁପ୍ ଚୁପ କଲେ । ଜମ୍ବୁ ସେମାନଙ୍କ କଥା ମୋଟେ ମାନିଲା ନାହିଁ, ଖୁବ୍ ଜୋରରେ ପିଞ୍ଜରା ଭାଙ୍ଗି ପକେଇବାକୁ ବସିଲା । ସର୍ଦ୍ଦାରମାନେ ତାକୁ ସ୍ଥିରଥିବାକୁ ଭୋବଡ଼ା ମାଡ଼ ଲଗେଇଲେ । ଜମ୍ବୁ ମାଡ଼ ଖାଇ ଯନ୍ତ୍ରଣାତୁରକ ଚିତ୍କାର କଲା ଏବଂ ଭୟଙ୍କର ଉତ୍ତେଜିତ ହେଲା । ସେମାନେ ତାକୁ କୌଣସିମତେ ମନେଇ ପାରିଲେ ନାହିଁ । ଓଲଟି ଏପରି ଅଶଙ୍କା ହେଲା ଯେ ଜମ୍ବୁ ସମୁଦାୟ ଲୁହାପିଞ୍ଜରାକୁ ଓଲଟାଇ ଦେଇ ଭାଙ୍ଗି ପଳାଇଯିବ । ତେଣୁ ସେମାନେ ତାକୁ ଅଧିକ ଉତ୍ତେଜିତ କରିବାକୁ ସାହସ କଲେ ନାହିଁ । ସେମାନଙ୍କ କାମ ସେଠାରେ ବନ୍ଦ କରିଦେଲେ ।

ଚମ୍ପା ଏ ଘଟଣା ଶୁଣି ଧାଇଁ ଆସିଲା ଏବଂ "ଜମ୍ବୁ, "ଜମ୍ବୁ" ବୋଲି ଡାକ ଛାଡ଼ିଲା । ଜମ୍ବୁ ଚମ୍ପାକୁ ଦେଖି ଗୋଟାଏ ବଳାପଦ୍ଧନ କଲା ଏବଂ ହଠାତ୍ ତା ପାଟିରୁ ବାହାରି ପଡ଼ିଲା "ସାମ୍ପା, "ସାମ୍ପା" ଏହାଶୁଣି ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ଏ ମଧ୍ୟରେ ଚମ୍ପା ପିଞ୍ଜରା ଭିତରକୁ ପଶିଯାଇ 'ଜମ୍ବୁ ଜମ୍ବୁ' ବୋଲି ଡାକ ଛାଡ଼ିଲା । ଜମ୍ବୁ ଚମ୍ପା ହାତକୁ ଧରି ସାମ୍ପା ସାମ୍ପା ବୋଲି ଖୁବ୍ ଆନନ୍ଦଧ୍ୱନି କଲା ଏବଂ ତାକୁ କୃତଜ୍ଞତାଭରି ନାଚିଲା । ଏତେବେଳକୁ ସର୍ଦ୍ଦାରମାନେ ବହୁ ଦୂରକୁ ହଟି ଯାଇଥିଲେ ଏବଂ ମାଷ୍ଟରଙ୍କ ଚୁପ୍ ସଙ୍କେତ ଅନୁସାରେ ଭୋବଡ଼ା ସବୁ ଲୁଚେଇ ଦେଇଥିଲେ ।

---

ଅଣଗୃହିଣୀ

## —ବାର—

ପଞ୍ଚମ ଦିନ ସର୍କସ ହେବ ଏବଂ ଜମ୍ବୁ ତହିଁରେ ନାଚ କରିବ ବୋଲି ଗ୍ରାମଅଂଚଳ ଲୋକଙ୍କୁ ଜଣାଇ ଦିଆଯାଇଥିଲା ଏବଂ ଖବର କାଗଜମାନଙ୍କରେ ନୋଟିସ ଛପା ହୋଇଥିଲା । ତେଣୁ ସେଦିନ ସର୍କସ ଦେଖିବାକୁ ବହୁ ଲୋକଠାରୁ ସାନ ଲୋକପାଏ ଧାଇଁଲେ । ସମସ୍ତଙ୍କ ମୁହଁରେ ଏକାକଥା, କଣର ଜମ୍ବୁକୁ ଦେଖିବେ । ସେଦିନ ସର୍କସରେ ଏତେ ଭିଡ଼ ହେଲା ଯେ ପ୍ରାୟ ପାଞ୍ଚହଜାର ଲୋକ ଟିକେଟ୍ ନପାଇ ଫେରିଗଲେ । ଜମ୍ବୁକୁ ସର୍କସ ଭିତରକୁ ଅଣାଗଲା । ସର୍ଦ୍ଦାରମାନେ ତାକୁ ନଚେଇବାକୁ ବହୁତ ଚେଷ୍ଟାକଲେ ଏବଂ ଜୋରହାତରେ ପିଟିଲେ । ମାତ୍ର ଜମ୍ବୁ ସେ କଥା ନ ମାନି ଖାଲି ଭୟଙ୍କର ଗର୍ଜନ କଲା ଏବଂ ସର୍ଦ୍ଦାରମାନଙ୍କୁ ମାରି ଟିକି ଟିକି କରିଦେବାକୁ ଉଠୁଥିଲା ।

ଲୋକେ ଜମ୍ବୁକୁ ସ୍ପଷ୍ଟରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଏପରି ଗୋଟାଏ ଜୀବ ବଣ ଭିତରକୁ କୁଆଡୁ ଆସିଲା ? କେହି ଏହାର କୌଣସି କଥା ଠଉରାଇ ପାରିଲେ ନାହିଁ । ତହିଁ ଆରଦିନ ଭିଡ଼ ଅଧିକ ବେଶି ହେଲା । ଅନେକ ଦୂରଦେଶମାନଙ୍କରୁ ଲୋକେ ରେଳରେ ଚଢ଼ି ଆସିଲେ । ସେ ଦିନବି ହଜାର ହଜାର ଲୋକ ଟିକେଟ ନ ପାଇ ଫେରିଗଲେ । ଏହା ଦେଖି ସର୍କସ ମାଷ୍ଟର ଦିନରେ ଥରେ ଓ ରାତିରେ ଥରେ ଏପରି ଦୁଇଥର ସର୍କସ ଦେଖାଇଲେ । ସେଥିରେ ବି ଅସୀମ ଭିଡ଼ । ମାଷ୍ଟର ଅଠ ଦିନରେ ଦୋଡ଼ିଏ

ହାଜର ଝଙ୍କା ଲଭିକଲେ । ତଥାପି ଲୋକଙ୍କ ଅଗ୍ରହ ଭାଙ୍ଗିଲ ନାହିଁ । ଯେତେଥର ଦୃଶ୍ୟ ଦେଖାହେଲ, ସେତେଥର ଅସୀମ ଭିଡ଼ ହେଲ । ସର୍ଦ୍ଦାରମାନଙ୍କ କଥାରେ ଜମ୍ମୁ ଅଯୃତ୍ତ ନହେବାରୁ ଚମ୍ପା ଅସି ଜମ୍ମୁକୁ ନଚେଇଲେ ଏବଂ ଲୋକେ ତାହା ଦେଖି ବହୁତ ଅଶ୍ଚର୍ଯ୍ୟ ହୋଇଗଲେ ।

---

ବେରୁଲଣା

## —ଚୋର—

ନାଗପୁର ସହର ଭିତରେ ଜଣେ ପ୍ରସିଦ୍ଧ ବୈଜ୍ଞାନିକ ଡାକ୍ତର ଥିଲେ । ସେ ଅମେରିକାରେ ବିଜୁଳି ଚିକିତ୍ସା ଶିକ୍ଷାକରି ଭାରତରେ ଅନେକ ଲୋକଙ୍କୁ ଚିକିତ୍ସା କରି ଭଲ ନାଁ କରିଥିଲେ । ଏ କାମରେ ତାଙ୍କର ଅନେକ ଟଙ୍କା ରୋଜଗାର ହେଉଥିଲା ଏବଂ ଦୀର୍ଘକାଳ ଚିକିତ୍ସା କରି କରି ସେ ବୁଢ଼ା ହୋଇ ଯାଇଥିଲେ । ସେ ଏକପ୍ରକାର ଅଦ୍ଭୁତ ଚିକିତ୍ସା କରୁଥିଲେ । ଦେହରେ ବିଜୁଳି ଖେଳାଇ ସେ ଭଙ୍ଗା ହାଡ଼ ଓ ଭଙ୍ଗାଗୋଡ଼ ଯୋଡ଼ି ଦେଉଥିଲେ ଏବଂ ଅନେକ ଅନ୍ଧ, କଣା, ଛୋଟା, କାଲ ଓ ବୋକାଲୋକଙ୍କୁ ଚିକିତ୍ସା କରି ସେମାନଙ୍କୁ ନୂଆ ଜୀବନ ଦେଉଥିଲେ । ଏଥିଲାଗି ତାଙ୍କର ସୁଖ୍ୟାତି ଚାରିଆଡ଼େ ବ୍ୟାପି ଯାଇଥିଲା । ବହୁତ ଦୂରରୁ ଲୋକେ ତାଙ୍କ ନିକଟକୁ ଆସି ଚିକିତ୍ସା ଗ୍ରହଣ କରୁଥିଲେ ।

ଜମ୍ମୁ ଧରା ହୋଇ ନାଗପୁରକୁ ଆସିବା ଦିନୁ ସେ ତାକୁ ଦେଖିବାକୁ ବାରବାର ଆସୁଥିଲେ ଏବଂ ତାର ଚାଲି ଚଳନ ଓ ଅନ୍ୟାନ୍ୟ ଢଙ୍ଗ ସବୁ ଲକ୍ଷ୍ୟ କରୁଥିଲେ । ପନ୍ଦରଦିନ ଦେଖିଲାପରେ ତାଙ୍କ ମନରେ ଗୋଟାଏ ଧାରଣା ଜନ୍ମିଲା ଯେ ଜମ୍ମୁ ଗୋଟାଏ ମନୁଷ୍ୟ; ଘଟଣାକ୍ରମେ ପଶୁ ପାଲଟି ଯାଇଛି । ଏହା ଦେଖି ସେ ଜମ୍ମୁକୁ ବିଜୁଳି ଚିକିତ୍ସା କରି ତାର ରୂପ ବଦଳେଇ ପାରିବେ-ବୋଲି ସ୍ଥିର କଲେ ଏବଂ ସରକାରଙ୍କୁ ସେକଥା ଜଣେଇଲେ । ସରକାର ତାହା ସ୍ୱୀକାର କରି ତହିଁରେ ଯାହା ଖର୍ଚ୍ଚ ହେବ ତାହା ଡାକ୍ତରଙ୍କୁ ଦେବେବୋଲି ଜଣେଇଦେଲେ । ଡାକ୍ତର ତହିଁରେ କୃତକାର୍ଯ୍ୟ ହେଲେ ତାଙ୍କୁ ପଚିଶ ହଜାର ଟଙ୍କା ପୁରସ୍କାର ଦିଆଯିବ ବୋଲି ବଡ଼ଲାଟଙ୍କଠାରୁ ମଧ୍ୟ ହୁକୁମ ଆସିଲା ।

---

ବସ୍ତ୍ରାଲଣୀ

## —ଚଉଦ—

ଏଣେ ଇମ୍ପୁର ସମସ୍ତ ଘଟଣା ଅନୁସନ୍ଧାନ କରିବାକୁ ଦଳେ ବିଶେଷଜ୍ଞ ଲୋକଙ୍କୁ ସରକାର ନିଯୁକ୍ତ କଲେ । ସେମାନେ ବଡ଼ କୌଶଳରେ ତାଙ୍କ ଅନୁସନ୍ଧାନ ଆରମ୍ଭ କଲେ । ସେମାନେ ପ୍ରଥମେ ଦେଖିଲେ, ଇମ୍ପୁ ନାମରେ ଏହି ଗୋଟିଏ ମାତ୍ର ଜୀବ ସେ ବଣରେ ଥିଲା କି ତାହାର ଜାତୀୟ ଆଉ ଅନେକ ଇମ୍ପୁ ସେ ବଣ ଭିତରେ ଅଛନ୍ତି । ଏହି ପ୍ରଶ୍ନର ସମାଧାନରେ ସେମାନେ ଅଗ ଲାଗିଗଲେ । ସେମାନେ ବହୁତ ଅନୁସନ୍ଧାନ କରି ବୁଝି ବୁଝି ଠିକ୍ କଲେ ଯେ ଇମ୍ପୁ ଜାତୀୟ ଜୀବ ଆଉ ଗୋଟିଏ ହେଲେ ସେ ମହାବଣରେ ନାହିଁ କିମ୍ବା ଭାରତରେ ଆଉ କୌଣସି ବଣରେ ନାହିଁ । ଇମ୍ପୁ ଏକମାତ୍ର ଗୋଟାଏ ଅଦ୍ଭୁତ ଜୀବ ସେ ମହାବଣରେ ଅକସ୍ମାତ୍-ଭାବରେ ଦେଖାଦେଇଛି ।

ତାପରେ ସେମାନେ ବୁଝିଲେ, ଇମ୍ପୁ ନାମ କେତେଦିନ ହେଲା ଲୋକେ କୁହାକୁହି ହେଉଛନ୍ତି ଏବଂ ଏ ନାମ କୁଆଡ଼ୁ ଜାତ ହେଲା । ଏ ପ୍ରଶ୍ନର ସମାଧାନ ପାଇଁ ସେମାନଙ୍କୁ ବହୁତ ପରିଶ୍ରମ ପଡ଼ିଲା । ସେମାନେ ବହୁତ ବୁଝି ବୁଝି ଶେଷରେ ଠିକ୍ କଲେ ଯେ ଇମ୍ପୁ ନାମ ପ୍ରାୟ ସତର ବର୍ଷ ହେଲା ଲୋକେ କୁହାକୁହି ହେବାକୁ ଆରମ୍ଭ କରିଛନ୍ତି ଏବଂ ସେହି ସମୟରୁ ତା ସମ୍ପର୍କରେ ଅଛିଛନ୍ତି । ଏଥିରୁ ଜଣାଗଲା ଯେ ଇମ୍ପୁ ସତର ବର୍ଷ ହେଲା ସେ ମହାବଣ ଭିତରେ ଗୋଳମାଳ ଆରମ୍ଭ କରିଛି ଏବଂ ଲୋକେ ତା ଉପଦ୍ରବରେ

ସେ ଦେଶ ଛାଡ଼ି ପଳେଇ ଗଲେଣି । ଏ ମଧ୍ୟରେ ଶହ ଶହ ଗ୍ରାମ ବଣର ଗ୍ରାସରୁ ଉଠି ପାରୁଅଛି ଏବଂ ହଜାର ହଜାର ମାଣ ଜମି ପଡ଼ିଆ ପଡ଼ି ରହିବାରେ ଜଙ୍ଗଲ ମାଡ଼ିଗଲାଣି । ଏଥିରେ ଲୋକେ ଯେପରି କ୍ଷତିଗ୍ରସ୍ତ, ଗଭର୍ଣ୍ଣମେଣ୍ଟ ମଧ୍ୟ ସେପରି କ୍ଷତିଗ୍ରସ୍ତ ହୋଇ ଅଛନ୍ତି । ତେଣୁ ଗଭର୍ଣ୍ଣମେଣ୍ଟ ଲୋକଙ୍କର ଏ ଅଶାନ୍ତି ଭାଙ୍ଗି ସେମାନଙ୍କୁ ନିର୍ଭୟ କରିବାପାଇଁ ଅନେକ ଚେଷ୍ଟାକରି ବିଫଳ ହୋଇଅଛନ୍ତି । ଅନ୍ତ ସର୍ବଶମାଷ୍ଟର ଓ ତାଙ୍କ ସର୍ଦ୍ଦାରମାନଙ୍କର ପ୍ରାଣଘାତ ପରିଶ୍ରମ ଓ ଅଧ୍ୟବସାୟ ଫଳରେ ଜମ୍ମୁ ଧରାହୋଇ ଆସିଥିବାରୁ ଲୋକେ ଯେପରି ତାଙ୍କ ପ୍ରତି କୃତଜ୍ଞ, ସରକାର ମଧ୍ୟ ସେହିପରି କୃତଜ୍ଞ ହୋଇ ଅଛନ୍ତି । ତେଣୁ ଜମ୍ମୁର ସମସ୍ତ ବିବରଣ ଅନୁସନ୍ଧାନ କରି ସରକାରଙ୍କୁ ଜଣାଇବାକୁ ସେ ଏ ବିଶେଷଜ୍ଞମାନଙ୍କୁ ନିଯୁକ୍ତ କରିଅଛନ୍ତି । ସେମାନଙ୍କ ରିପୋର୍ଟ ପାଇଲେ ସରକାର ଅବଶ୍ୟ ସର୍ବଶମାଷ୍ଟର ଓ ତାଙ୍କ ସର୍ଦ୍ଦାରମାନଙ୍କୁ ପ୍ରଚୁର ପୁରସ୍କାର ଦେବେ ଏବଂ ଯଥେଷ୍ଟ ସମ୍ମାନ ଦେଖାଇବେ । ତେଣୁ ବିଶେଷଜ୍ଞମାନେ ଅନୁସନ୍ଧାନରେ ଲାଗିଥିଲେ ।

ତା ପରେ ଦ୍ୱିତୀୟ ପ୍ରଶ୍ନ ଉଠିଲା ଜମ୍ମୁ ପନ୍ଦର ବର୍ଷ ହେଲା ଲୋକଙ୍କ ଦୃଷ୍ଟି ଭିତରକୁ ଆସିଲେ ମଧ୍ୟ ତା ପୂର୍ବରୁ ନିଶ୍ଚୟ ସେ ଶୈଶବ ଅବସ୍ଥା ଭୋଗ କରିଥିବ । ସେଥିପାଇଁ ଅନ୍ତ ୭।୮ ବର୍ଷ ହିସାବରେ ଧରାଯାଇ ଜମ୍ମୁର ବର୍ତ୍ତମାନ ବୟସ ପଚିଶ ବର୍ଷ ବୋଲି ଧାର୍ଯ୍ୟ କରାଗଲା । ତାହେଲେ ପଚିଶ ବର୍ଷତଳେ ଏପରି କି ଘଟଣା ଘଟିଥିଲା, ଯହିଁରେ ଜମ୍ମୁର ଉତ୍ପତ୍ତି ହୋଇଅଛି, ଏହି ବିଷୟ ଅନୁସନ୍ଧାନ କରିବାକୁ ସେମାନଙ୍କୁ ବହୁତ ପରିଶ୍ରମ ପଡ଼ିଲା । ସେମାନେ ବହୁତ

ମୁଣ୍ଡ ଖୋଲେଇଲେ । ନାନା ଅଡ଼େ ଅନେକ ଲୋକଙ୍କୁ ପଚାରି ପଚାରି ହଠାତ୍ ଗୋଟାଏ ସମ୍ବାଦ ପାଇଲେ, ମାନ୍ଦ୍ରାଜର ଜଣେ ଖ୍ୟାତ ଜମିଦାର ପଚିଶ ବର୍ଷ ତଳେ ତୀର୍ଥଯାତ୍ରା କରିବାକୁ ଏ ମହା ବଣ ଦେଇ ସପରିବାରରେ ଯାଉଥିଲେ । ବାଘ, ସିଂହ ଓ ବନ୍ୟ ଲୋକଙ୍କ ହାତରେ ପଡ଼ି ତାଙ୍କର ସମସ୍ତେ ମରିଗଲେ । ତେଣୁ ତାଙ୍କର କେହି ଓ୍ୱାରିସ୍ ନ ଥିବାରୁ ସରକାର ତାଙ୍କର ଜମିଦାରୀ କ୍ରୋକ୍ ଭୁକ୍ତ କରି ଦେଇଅଛନ୍ତି ।

ଏ ସମ୍ବାଦଟିକୁ ପାଇ ସେମାନେ ମାନ୍ଦ୍ରାଜକୁ ଗଲେ ଏବଂ ସେଠାରେ ସରକାରୀ କାଗଜପତ୍ର ଘାଣ୍ଟି ଘାଣ୍ଟି ଏହି ବିଷୟର ଗୋଟାଏ ବଡ଼ ନଥି ପାଇଲେ । ସେ ନଥି ନକଲ ତକଲ କରି ପଢ଼ିବାରେ ତହିଁରୁ ଜଣାଗଲା, ମାନ୍ଦ୍ରାଜ ସରକାର ଅନେକ ଲୋକଙ୍କ ଠାରୁ ପ୍ରମାଣ ନେଇ ଅନେକ ଅନୁସନ୍ଧାନ କରି ଜମିଦାର ସବଂଶେ ବଣ ଭିତରେ ବିନଷ୍ଟ ହୋଇଥିବାର ବୁଝିଥିଲେ । ସର୍କାର ଯେଉଁ-ମାନଙ୍କଠାରୁ ପ୍ରମାଣ ନେଇଥିଲେ କମିଟି ମେମ୍ବରମାନେ ସେମାନଙ୍କୁ ଡକେଇଲେ । ସେମାନଙ୍କ ମଧ୍ୟରୁ ତିନିଜଣ ମାତ୍ର ଜୀବିତ ଥିଲେ । ସେମାନେ ଆସି ଜମିଦାରଙ୍କ ତୀର୍ଥଯାତ୍ରା, ବଣ ଭିତରେ କିପରି ବିପଦ ଉପରେ ବିପଦ ପଡ଼ିଲା, ସମସ୍ତେ କିପରି ମଲେ, ସେମାନେ କିପରି ପ୍ରାଣ ଘେନି ପଳାଇ ଆସିଥିଲେ, ଏହାସବୁ ଗୋଟି ଗୋଟି କରି କହିଲେ । ସେମାନଙ୍କ ସାଙ୍ଗରେ ଯେଉଁମାନେ ଯାଇଥିଲେ , ସେମାନେ କିଏ କେଉଁଠାରେ କିପରି ମଲେ ତାହା ମଧ୍ୟ କହିଲେ, ମାତ୍ର ଜମିଦାରଙ୍କର ଚଉଦବର୍ଷର ଗୋଟିଏ ନାତି କୁଆଡ଼େ ଗଲା କି କେଉଁଠାରେ ମଲା, ତାହା ସେମାନେ କହି ପାରିଲେ ନାହିଁ ।

ଷର୍ଁ ସ୍ନୁଲଣା

ତାଙ୍କୁ ଜମିଦାରଙ୍କ ଘରର ସମସ୍ତେ ସ୍ନେହରେ ଜମ୍ବୁ ବୋଲି ଡାକୁଥିଲେ ଏବଂ ଖୁବ କୌତୁକ କରି ତାପ୍ରତି ସମସ୍ତ ସ୍ନେହ ଢାଳି ଦେଉଥିଲେ । କମିଟି ମେମ୍ବରମାନେ ଏହି ଶିଶୁ ଟିକକ ପାଇ ସେଥିରୁ ଅନେକ କଥା ବାହାର କଲେ । ସେମାନେ ଅନେକ ଆଲୋଚନା ପରେ ସ୍ଥିର କଲେ ଯେ ସେହି ତନ୍ନବର୍ଷର ଶିଶୁ ପୁଅ ଜମ୍ବୁ ବଣ ଭିତରେ ବଣୁ ପଶୁମାନଙ୍କ ସଙ୍ଗେ ମିଶି ଚଳାଚଳ ହେବାରୁ ତାର ପଶୁ ସ୍ୱଭାବ ଓ ପଶୁ ଚେଷ୍ଟାସବୁ କାଳକ୍ରମେ ହୋଇ ଯାଇଛି । ସେହି ଜମ୍ବୁ ବର୍ତ୍ତମାନ ଏହି ବିଖ୍ୟାତ ଜମ୍ବୁ । ସେମାନେ ଏ ସମସ୍ତ ରିପୋର୍ଟ କରି ସରକାରଙ୍କୁ ଜଣାଇଲେ । ସରକାର ବହୁ ଆଲୋଚନା ପରେ ଏ ସମ୍ବାଦ କାଗଜ ସାଧାରଣଙ୍କୁ ଜଣାଇଲେ ଏବଂ ତାହାକୁ କେବଳ ଫଳ ଫୁଲ ଖାଦ୍ୟ ପରେ ଜଣାଇବ ।

———

ଛତ୍ରଘଣ୍ଟ

## —ପନ୍ଦର—

ଜମ୍ବୁକୁ କେହି କୌଣସିମତେ ଅସ୍ଥିର କରି ପାରିଲେ ନାହିଁ । ତା ଉପରେ ଯେତେ କୋରଡ଼ା ମାଡ ହେଲା, ତହିଁରେ ସେ ଅଧିକ ଭୟାନକ ରୂପେ ଉତ୍ତେଜିତ ହେଲା ସିନା, କୌଣସି ମତେ ବାଟକୁ ଆସିଲା ନାହିଁ । କୋରଡ଼ା ମାଡରେ ସେ ଏତେ ବଗିଡି ଗଲା ଯେ ପୁରୁଷ ଲୋକ ଦେଖିଲେ ମାରିବାକୁ ସବୁବେଳେ ଉହୁଙ୍କିଲା । ତାର ଭୟଙ୍କର ରଙ୍ଗ ଓ ଉତ୍ତେଜନା ଦେଖି କେହି ତା ସୀମାରେ ପଶି ପାରିଲେ ନାହିଁ । କେବଳ ଚମ୍ପାକୁ ଦେଖିଲେ ସେ ଲହୁଣୀ ପରି କୋମଳ ହୋଇ ଯାଉଥିଲା ଏବଂ ଚମ୍ପା ଯାହା କହୁଥିଲା ତାହା ଆନନ୍ଦ ମନରେ କରୁଥିଲା । ଚମ୍ପାକୁ ପିଞ୍ଜରା ବାହାରେ ଦେଖିଲେ ସେ ଏତେ ଖୁସି ହୋଇଯାଏ ଯେ ଆନନ୍ଦରେ ଚିତ୍କାର କରି ବହୁତ ନାଚକୁଦ କରେ ଏବଂ ବାହାରକୁ ଦୁଇହାତ ବଢ଼େଇ ଦେଇ ସତେ ଯେପରି ଚମ୍ପାକୁ ତା ନିକଟକୁ ଡାକେ । ଚମ୍ପା ପିଞ୍ଜରା ଭିତରେ ପଶିଲେ ତାର ଆନନ୍ଦର ସୀମା ରହେନାହିଁ । ସେ କେତେ ନାଚେ, କେତେ ସ୍ନେହର ଭାବ ଦେଖାଏ ଏବଂ "ଆମ୍ମା ଆମ୍ମା" ବୋଲି କହି କେତେ ଯେ ତାକୁ ଗେଲକରେ, ତାର ସୀମାନାହିଁ । ଚମ୍ପା ମଧ୍ୟ ଜମ୍ବୁ ଜମ୍ବୁ ବୋଲି ଡାକି ତାକୁ ଅନେକ ସ୍ନେହ କରେ ଏବଂ ତାର ଦେହ ମୁହଁ ଅଉଂସି ଦେଇ ଭଲ ଭଲ ଜିନିଷ ତାକୁ ଖାଇବାକୁ ଦିଏ ।

ଦିନେ ଚମ୍ପା ଜମ୍ବୁର ହାତ ଧରି ତାକୁ ପିଞ୍ଜରା ବାହାରକୁ ନେଇ ଆସିଲା ଏବଂ ଖୋଲା ଅଗଣାରେ ଅନେକ ବେଳଯାଏ

ସତଗୃଞ୍ଜଣୀ

ବୁଲୁଥିଲା । ସେତେବେଳକୁ ସମସ୍ତେ ଯେ ଯୁଅଡ଼େ ଲଟି ଯାଉ-ଥିଲେ । ଜମ୍ବୁର ଏପରି ଶାନ୍ତ ଅଣ୍ଡାଭାବ ଦେଖି ଜଣେ ସର୍ଦ୍ଦାର ଖୁବ୍ ସାହସ ଧରି ଟିକିଏ ପଦାକୁ ବାହାରି ଆସିଲା ଏବଂ ଜମ୍ବୁ ଜମ୍ବୁ ବୋଲି ଦଉଡ଼ିବଡ଼ାକ ଏକାବେଳକେ ଡ଼ାକିଦେଲା । ଜମ୍ବୁ ସେ ଅଡ଼କୁ ବୁଲିପଡ଼ିବା ମାତ୍ରକେ ଗୋଟାଏ ଭୟଙ୍କର ଗର୍ଜନ କରି ବାଜୁଲା ପରି ସର୍ଦ୍ଦାର ଅଡ଼କୁ ଚମକି ଗଲା ଏବଂ ଗୋଟାଏ ଆପୋଡ଼ରେ ତା ମୁଣ୍ଡକୁ ଛୁଣ୍ଡାଇ ତା ହାତଗୋଡ଼ ଖଣ୍ଡ ଖଣ୍ଡ କରି ଜପାଡ଼ ଦେଲା । ତା'ପରେ ଖାର୍ଚ୍ଚ ଘାର୍ଚ୍ଚ ଶବ୍ଦକରି ତା ଦେହକୁ ଏପରି ଭାବରେ ଦଳିଦେଲା ଯେ ହାଡ଼ ମାଂସ ସବୁ ମେଞ୍ଚାଟିଏ ହୋଇଗଲା । ଏତକ କାମ କରିବାକୁ ଜମ୍ବୁକୁ ଦୁଇ ମିନିଟରୁ ବେଶି ସମୟ ଲାଗିଲା ନାହିଁ । ଚମ୍ପା ଜମ୍ବୁ ଜମ୍ବୁ ବୋଲି ଡାକି ତା ଅଡ଼କୁ ଧାଇଁଗଲା ବେଳକୁ ସେ ମୁହୂର୍ତ୍ତିକେ କାମ ସାରି ଦେଇ ଚମ୍ପା ପାଖକୁ ଧାଇଁ ଆସିଲା ଏବଂ ସାମ୍ନା ସାମ୍ନା ବୋଲି କହୁ ତାକୁ ବହୁତ ଅଦର କଲା । ଚମ୍ପା ଏ ଘଟଣାରେ ବଡ଼ ବିଚଳିତ ହୋଇ ଯାଇଥିଲା । ସେ ଜମ୍ବୁର ହାତ ଧରି ନେଇଗଲା ଏବଂ ପିଞ୍ଜରା ଭିତରେ ତାକୁ ପୂରାଇ କବାଟ ବନ୍ଦ କରିଦେଲା ।

ଜମ୍ବୁକୁ ପଦାକୁ ବାହାର କରିବାକୁ ସେ କାହାର ଅନୁମତି ନେଇ ନ ଥିଲା । ସେ ନିଜ ଖୁସିରେ ତାହା କରିଥିଲା । ଏଥିରେ ପୁଣି ଏପରି ଦୁର୍ଯୋଗ ଘଟି ଜଣେ ସର୍ଦ୍ଦାର ଏପରି ଶୋଚନୀୟ ଭାବରେ ମରିଯିବ ବୋଲି ସେ କଳ୍ପନା କରି ନ ଥିଲା । ସର୍କସ ମାଲିକ ଏ କଥା ଶୁଣି ଧାଇଁ ଆସିଲେ ଏବଂ ସର୍ଦ୍ଦାରର ଏ ଅବସ୍ଥା ଦେଖି ବଡ଼ ଦୁଃଖିତ ହେଲେ । ତାଙ୍କ ନିଜର ଚମ୍ପା ପୁଣି ଏହାର

ଭାବ ଣି ଥିବାରୁ ତାଙ୍କ ଦୁଃଖ ଅତୁର ବଢ଼ିଗଲା । ଟମ୍ପା ଜମ୍ବୁକୁ ତାଙ୍କ ବିନାନୁମତିରେ ଏପରି ଅବୋଧ ଭାବରେ ପଦାକୁ ଆଣି ଥିବାରୁ ସେ ତା ଉପରେ ବଡ଼ ବିରକ୍ତ ହେଲେ ଏବଂ ଆଉ ସର୍କସ ନଗର ଭିତରେ ତାକୁ ରଖାଇ ନ ଦେଇ ନାଗପୁର ସହର ମଧ୍ୟରେ ଥିବା ତାଙ୍କର ଜଣେ ଆତ୍ମୀୟ ବନ୍ଧୁଙ୍କ ଘରେ ନେଇ ରଖାଇ ଦେଲେ । ଏଣେ ଜମ୍ବୁକୁ ଯେଉଁମାନେ ଖାଇବାକୁ ଦେବାକୁ ଆସିଲେ ସେମାନେ ତାର ବଣୁଆ ଘାତରେ ତା ସୀମାରେ ପଶି ପାରିଲେ ନାହିଁ । ତେଣୁ ଜମ୍ବୁ ଦୁଇଦିନ ପର୍ଯ୍ୟନ୍ତ କିଛି ନ ଖାଇ ଓ ଟମ୍ପାକୁ ନ ଦେଖି ଭୀଷଣ ଭାବରେ ରାଗିଗଲା ଓ ସବୁବେଳେ ଖାଲି ଘୁଡ଼ୁର ଘୁଡ଼ୁର ହେଲା ।

ସର୍କସ ସନ୍ଧ୍ୟାବେଳେ ଦେଖା ହେଉଥିବା ସମୟରେ ଜମ୍ବୁର ପିଞ୍ଜରାକୁ ସର୍କସ ଭିତରକୁ ଟାଣି ନିଆଗଲା ଏବଂ ସର୍ଦ୍ଦାରମାନେ ଜମ୍ବୁକୁ ନଚେଇବା ଉଦ୍ଦେଶ୍ୟରେ କୋରଡ଼ା ମାଡ଼ ଦେଲେ । ଏଥିରେ ଜମ୍ବୁର କ୍ରୋଧ ବହୁତ ବଢ଼ିଗଲା । ସେ ଭୟଙ୍କର ହୁଙ୍କାରରେ ପିଞ୍ଜରାର ଗୋଟାଏ ବାଡ଼କୁ ଏପରି ଗୋଟାଏ ଧକ୍କା ଦେଲା ଯେ ତାହା ଭାଙ୍ଗି ତଳେ ପଡ଼ିଗଲା । ଆଖି ପିଛୁଳାକେ ସେ ପଦାକୁ ଧାଇଁ ଯାଇ ଗୋଟାଏ ସର୍ଦ୍ଦାରର ଗୋଡ଼ ଧରି ବୁଲାଇ ବୁଲାଇ ଗୋଟାଏ ଖମ୍ବରେ ନେଇ ପିଟିଦେଲା । ତହିଁରେ ସର୍ଦ୍ଦାରର ଦେହଟା ଏକାବେଳକେ ଚୂନା ହୋଇଗଲା । ହଜାର ହଜାର ଲୋକ ସର୍କସ ଦେଖୁଥିଲେ । ସମସ୍ତେ ପ୍ରାଣ ଭୟରେ ଏଣେତେଣେ ପଳାଇବାକୁ ଲାଗିଲେ । ମାତ୍ର ଗୋଟିଏ ବାଟ ଥିବାରୁ ଏତେ ଲୋକ ସେ ବାଟେ ଯାଇ ନ ପାରି ତା ଉପରେ ସେ ତା ଉପରେ

ଅଳ୍ପକ୍ଷଣେ ଏପରି ପଡ଼ିଗଲା । ଭୟଙ୍କର ଗୋଳମାଳ, ଭୟଙ୍କର ଅଶାନ୍ତି ଓ ଲୋକମାନଙ୍କର ଭୀଷଣ ବ୍ୟାକୁଳତା ବଢ଼ିଲା । ପ୍ରତ୍ୟେକ ଲୋକ ଚିତ୍କାରରେ ଜମ୍ମୁ ଯେପରି ତା ଫାଟି ଫାଟି ପଡ଼ୁଛି । ଏ ଦଳାଦଳି, ଠେଲାଠେଲି ଓ ଧକ୍କାଧକ୍କିରେ କେତେଲୋକ ମଲେ, କେତେ ଆହତ ହେଲେ, କେତେ ଅଚେତ ହୋଇ ପଡ଼ିଗଲେ ଏବଂ କେତେଲୋକଙ୍କର ଲୁଗା ପୋଷାକ ଛିଣ୍ଡିଗଲା । ଲୋକେ ଯେ ଯୁଆଡ଼େ ବାଟୁବାଟ ପାଇଲେ ପଳେଇ ଯିବାରେ ସର୍ବତ୍ର ଘୋର ବହୁତ କ୍ଷତି ହେଲା । ପରେ ଦେଖାଗଲା ଯେ ପଚିଶି ଜଣ ସ୍ତ୍ରୀ ପୁରୁଷ ମରି ଯାଇଥିଲେ, ଦେଢ଼ଶହ ସ୍ତ୍ରୀ ପୁରୁଷ ଆହତ ହୋଇଥିଲେ ଏବଂ ତିନିଶହ ଲୋକ ଅଚେତ ହୋଇ ଯାଇଥିଲେ । ଏପରି ଗୋଟାଏ ଆକସ୍ମିକ ଘଟଣାରେ ସରକାର ବହୁତ ଦୁଃଖ ପ୍ରକାଶ କଲେ ଏବଂ ଲୋକମାନଙ୍କୁ ନାନାପ୍ରକାର ଆଶ୍ୱାସନା ଦେଲେ । ସର୍ବଶେଷ ମାଷ୍ଟର ଦଶ ନିଜର ଅସାଧାରଣ କ୍ଷତିସତ୍ତ୍ୱେ ସାଧାରଣଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ ଏବଂ ମୃତ ଲୋକଙ୍କ ପରିବାରକୁ ଯଥୋଚିତ କ୍ଷତିପୂରଣ ଦେବାକୁ ଚାହିଁଲେ । ମାତ୍ର ଏଥିରେ ତାଙ୍କର କୌଣସି ଦୋଷ ନ ଥିବାରୁ ଲୋକେ ତାହା ଗ୍ରହଣ କଲେ ନାହିଁ ।



## —ଷୋହଳ—

ଏଣେ ସର୍ବଣ ଘର ଭିତରେ ଲୋକଙ୍କର ଏପରି ଗୋଳମାଳ ଲାଗିଥିବା ବେଳେ ଜମ୍ବୁ ସର୍ବଣବାବୁଙ୍କ ରହୁବା ଅଞ୍ଚଳ ଭିତରକୁ ଦ୍ରୁତ ବେଗରେ ପଳାଇଗଲା ଏବଂ ସବୁ ଘରମାନଙ୍କରେ ପଶି ଚମ୍ପାକୁ ଖୋଜିଲା । ଗୋଟାଏ ଘରେ ଅନେକ ଫଳ ଥୁଆ ହୋଇ-ଥିଲା । ଜମ୍ବୁ ତହିଁରୁ ଦୁଇକାନ୍ଧି ପାଚିଲାକଦଳୀ, ଦଶଟି ଅମ୍ବ, ଅତ, ସେଓ, ନାଶପାତି ପ୍ରଭୃତିରୁ ବୋଝେ ପାଞ୍ଚ ମିନିଟ ଭିତରେ ଖାଇଦେଇ ପଳାଇଗଲା । ତା ପରେ ଅନ୍ୟ ଘରମାନଙ୍କରେ ସେ ଖୋଜି ଖୋଜି କୌଣସିଠାରେ ଚମ୍ପାକୁ ନ ପାଇ କୋଠାବାଡ଼ି ଡେଇଁ ସହର ଭିତରକୁ ଚାଲିଗଲା । ସେ ସ୍ତ ଭିତରେ ଶହ ଶହ ଘର ଡେଇଁ ଚାରିଆଡେ ଚମ୍ପାକୁ ଖୋଜିଲା । ତିନି ମହଲା ଚାରି ମହଲା କୋଠାମାନଙ୍କ ଉପରକୁ ଅନାୟାସରେ ଉଠିଯାଇ ସବୁ ବଖରାରେ ବୁଲି ଖୋଜିଲା । ଏ ବଖରାରୁ ସେ ବଖରା ଏ ମହଲାରୁ ସେ ମହଲା ଜଣକ ଘରୁ ଆଉଜଣକ ଘରକୁ ଖେଳିଲା ପରି ମୁହୂର୍ତ୍ତକ ମଧ୍ୟରେ ଡେଇଁଯାଇ ଚମ୍ପାକୁ ଖୋଜିବାରେ ଲାଗିଲା । ପୁରୁଷମାନଙ୍କୁ ଦେଖିଲେ ଧକ୍‌କାମାରି ପକାଇ ଦେଉଥିଲା ଏବଂ ତାଙ୍କ ଉପରେ ଚେଁଯ ଖଟ ଅଧ ଗୁଡ଼ାଏ କ୍ଷିନିଷ ଲଦିଦେଇ ଚାଲିଯାଉଥିଲା । ସ୍ତ୍ରୀମାନଙ୍କୁ ଦେଖିଲେ ସେମାନଙ୍କ ଦୁଇହାତକୁ ଧରିପକାଇ ତାଙ୍କ ମୁହଁକୁ ଚାହିଁ ସାମ୍ପା ସାମ୍ପା ବୋଲି କହୁଥିଲା ଏବଂ ସେ ଚମ୍ପା ନ ଥିବାରୁ ତା ହାତ ଛାଡ଼ିପକାଇ ପଳାଇ ଯାଉଥିଲା । ଏଥିରେ ସ୍ତ୍ରୀଲୋକମାନଙ୍କ ଅବସ୍ଥା ଶୋଚନୀୟ ହୋଇ ପଡୁଥିଲା । ସେମାନେ

ମାଟିକାମୁଣ୍ଡ ତଳେ ପଡ଼ିଯାଉଥିଲେ ଏବଂ ସଙ୍ଗେ ସଙ୍ଗେ ଅଚେତ ହୋଇ ଯାଉଥିଲେ ।

ଏପରିଭାବରେ ରାତିସାରା ସହରମୟ ଅସ୍ଥିର ହୋଇଗଲା ଏବଂ ଭୟଙ୍କର ଉତ୍ତେଜନା ଚାରିଆଡ଼େ ବ୍ୟାପିଗଲା । ସହରର ପୁଲିସମାନେ ଜମ୍ମୁକୁ ଗୁଳି କରି ମାରିଦେବାପାଇଁ ଏଣେତେଣେ ଧାଇଁ ବୁଲିଲେ । ଅନେକ ଜାଗାରେ ସେମାନେ ତାକୁ ଦେଖିଲେ । ମାତ୍ର ଭୟରେ ସେମାନଙ୍କ ହାତ ଥରିବାରୁ ବନ୍ଧୁକ ଧରି ପାରିଲେ ନାହିଁ; ଗୁଳି ମାରିବେ କିଏଣ ? କେତେକ ଜାଗାରେ ପୁଲିସଙ୍କ ସାମ୍ନାରେ ଜମ୍ମୁର ଶତ୍ରୁଯୁଦ୍ଧ ମଧ୍ୟ ହୋଇଗଲା । ଜମ୍ମୁ ହଠାତ୍ ଲଫେଇ ସେମାନଙ୍କ ଭିତରେ ପଶିଯାଇ କାହାକୁ ଧକ୍କାଏ କାହାକୁ ଗୋଇଠାଏ ମାରି ତଳେ ପକାଇଦେଲା, କାହା ହାତରୁ ବନ୍ଧୁକ ଛଡ଼ାଇ ନେଇ ତାକୁ ତାକୁ କୁନ୍ଦାରେ ପିଟିବାକୁ ଲାଗିଲା । ତହିଁରେ କେତେ ସିପାହି ମଲେ ଏବଂ କେତେ ସିପାହି ଖଣ୍ଡିଆଖାବରା ହୋଇ ପଡ଼ିଗଲେ । ଅଳ୍ପ କେତେକ ସିପାହି ଏଣେ ତେଣେ ପଳାଇ ଲୁଚିବାକୁ ଲାଗିଲେ । ଗୋଟାଏ ବଡ଼ତୋଫାନ ଖୁବ୍ ଜୋରରେ ବୋହିଲେ ଚାରିଆଡ଼େ ଯେଉଁ ଅଶାନ୍ତ ଅବସ୍ଥା ଘଟେ, ଅଳ୍ପ ଜମ୍ମୁ ଉପଦ୍ରବରେ ସହରଟା'ଯାକ ସେହିପରି ଅବସ୍ଥାରେ ପଡ଼ିଗଲା । ଜମ୍ମୁର ଅତ୍ୟାଚାରରେ ସହରଟାଯାକ ଅସ୍ଥିର ହୋଇଗଲା । ସମସ୍ତେ ନିଜ ନିଜ ପ୍ରାଣ ନେଇ ବ୍ୟସ୍ତ । କେହି ନିଜ ବନ୍ଧୁବାନ୍ଧବମାନଙ୍କ ପ୍ରତି ଦୃଷ୍ଟି ଦେଇପାରିଲେ ନାହିଁ କିମ୍ବା ଘରଦ୍ୱାର ସମ୍ପତ୍ତିବାଡ଼ିକୁ ବୁଝିଲେ ନାହିଁ ।

## ବାହନ

ସର୍ବଶ ମାଷ୍ଟର ଚମ୍ପାକୁ ଯେଉଁ ବନ୍ଧୁଙ୍କ ଘରେ ରଖାଇଥିଲେ ସେ ଖବରଟା ଶୁଣିଲେ ଯେ ଜମ୍ବୁ ଚମ୍ପାକୁ ଖୋଜି ଖୋଜି ସହରସାରା ଅସ୍ଥିର କରୁଛି । ସେମାନେ ଚମ୍ପାର ଜୀବନ ପାଇଁ ଭୟ କରି ତାକୁ ନେଇ ଗୋଟାଏ ମଜବୁତ ଘରେ ଲୁଚେଇଦେଇ ଦ୍ବାର ବନ୍ଦ କରିଦେଲେ ଏବଂ ନିଜେ ନିଜେ ଖୁବ୍ ସାବଧାନରେ ରହିଲେ । ସତ ଶୁଣିବାବେଳକୁ ଜମ୍ବୁ ସେ ଅଞ୍ଚଳକୁ ଆସି ଉତ୍ପାତ ଆରମ୍ଭ କଲା ଏବଂ ସବୁଘର ବୁଲି ଖୋଜିବାରେ ଲାଗିଲା । ଚମ୍ପା ଥିବା ଘରକୁ ଖବରପାଇ ଶେଷରେ ସେଠାରେ ବହୁତ ଉତ୍ପାତ କଲା ଏବଂ ସେ ଘରେ ଅଗରୁ ସବୁଆଡ଼ ବନ୍ଦ ହୋଇଥିବାରୁ ଝରକା କବାଟମାନ ଭାଙ୍ଗି ଭିତରକୁ ପଶିଲା । ଅବଶେଷରେ ଚମ୍ପା ଯେଉଁଘରେ ଥିଲା ସେ ଘର କବାଟ ବନ୍ଦ ଥିବାର ଦେଖି ଏକା-ଗୋଇଠାକେ ତାହା ଭାଙ୍ଗି ଖଣ୍ଡଖଣ୍ଡ କରିଦେଲା ଏବଂ ଘର ଭିତରକୁ ପଶିଯାଇ ଗୋଟିଏ ସ୍ତ୍ରୀଲୋକ ଶୋଇଥିବାର ଦେଖିଲା । ସେ ବାଙ୍କୁଲିପରି ତା ଅଙ୍ଗକୁ ଚମକିଯାଇ ତା ମୁହଁକୁ ଗୁହିଦେବା-ମାତ୍ରକେ ଦେଖିଲା—ତାର ପ୍ରିୟତମା ଚମ୍ପା । ଚମ୍ପା ଜମ୍ବୁକୁ ଦେଖି ଖୁସିହୋଇ ସ୍ନେହରେ ତା ମୁହଁକୁ ଅଉଁସିଲା । ଜମ୍ବୁ ମଧ୍ୟ ତାକୁ କୁଣ୍ଢେଇ ପକାଇ ସାମ୍ପା ସାମ୍ପା ବୋଲି ଆନନ୍ଦରେ ନାଚିଗଲା । ଏପରସ୍ପରରେ ପାଞ୍ଚମିନିଟଯାଏ ସ୍ନେହର ବିନିମୟ ହେବାପରେ ଜମ୍ବୁ ଚମ୍ପାକୁ ବାଁ କାଖରେ ଜାକିଧରି ପାହାନ୍ତିଆ ଅନ୍ଧାରେ ଅନ୍ଧାରେ ଖୁବ୍ ବେଗରେ ଧାଇଁ ପଳାଇଗଲା । କଉଣ ଗୋଟାଏ ପଳାଇ ଯାଉଛି ବୋଲି ଲୋକେ ଗୃହଁଲାବେଳକୁ ସେ ସେ ଜାଗାରୁ ମୁହୂର୍ତ୍ତକ ମଧ୍ୟରେ ଅଦୃଶ୍ୟ ହୋଇଯାଇଥିଲା । କ୍ରମେ କ୍ରମେ ସେ ସହରର ସୀମା

ଯାଇହୋଇ ଦୂରରେ ଗୋଟାଏ ଭଙ୍ଗାକୋଠା ଦେଖିବାକୁ ପାଇଲା । ଜମ୍ବୁ ଚମ୍ପାସହ ସେ ଛାତ ଉପରକୁ ଉଠିଯାଇ ତାକୁ ସେଠାରେ ଶୁଆଇଦେଲା । ଜମ୍ବୁର ଏପରି ଆଚରଣ ଦ୍ରୁତଗତିରେ ଚମ୍ପାର ଚେତନା ଲୋପ ହୋଇ ଯାଇଥିଲା । ଜମ୍ବୁ ତାକୁ ତଳେ ଶୁଆଇ ତା ମୁହଁକୁ ଚାହିଁଲା ଏବଂ ଚମ୍ପା ଚମ୍ପା ବୋଲି ବହୁତ ଡାକିଲା । ମାତ୍ର ଚମ୍ପା ଜବାବ ନ ଦେବାରୁ ଜମ୍ବୁ ତା ମୁହଁକୁ ଦେଖିକି ଆଉଁସି ବଡ଼ ବ୍ୟାକୁଳ ହୋଇଗଲା ।

ପ୍ରଭାତର ସୁଶୀତଳ ପବନରେ ଚମ୍ପାର ଚେତନା ଫେରିଆସିଲା । ସେ ଆଖିମେଲି ଚାହିଁଲାମାତ୍ରେ ଜମ୍ବୁ ତା ମୁହଁକୁ ଆଉଁସି ବହୁତ ଖୁସିହେଲା ଏବଂ ଆନନ୍ଦରେ ନାଚିବାକୁ ଲାଗିଲା । ଜମ୍ବୁର ଏସବୁ ଲକ୍ଷଣ କେବେହେଁ ପଶୁଲକ୍ଷଣ ନୁହେ । ତାଠାରେ ମନୁଷ୍ୟର ଲକ୍ଷଣ ଥିବାର ଚମ୍ପା ଅନେକ ଘଟଣାରୁ ଆଗରୁ ବୁଝି ପାରିଥିଲା । ବର୍ତ୍ତମାନ ତାର ଏପରି ଭାବପ୍ରବଣତା ଦେଖି ସେ ଆନନ୍ଦରେ ଅଧୀର ହୋଇ ପଡ଼ିଲା । ତାପରେ ସେ ତାକୁ ପରୀକ୍ଷା କରିବା ଆଶାରେ ପାଟି ପେଟ ଦେଖାଇ ଖାଇବାକୁ ମାଗିଲା । ଜମ୍ବୁ ତକ୍ଷଣି ଗୋଟାଏ ବୁଝି କୋଠାରୁ ତଳକୁ ଡେଇଁ ପଡ଼ିଲା ଏବଂ ଏକା ଦମ୍‌ରେ ସହରଭିତରକୁ ଧାଇଁଲା । ସେଠାରେ ଗୋଟାଏ ଗୁଡ଼ିଆ ଦୋକାନ ଖୋଲା ଥିବାର ଦେଖି ତା ଭିତରକୁ ପଶିଗଲା ଏବଂ ଦୁଇ ଥାଳି ଲଡ଼ୁ ଲଟା ଦୁ ହାତରେ ଧରି ନକ୍ଷତ୍ର ବେଗରେ ଛୁଟିଯାଇ କୁଆଡ଼େ ଅଦୃଶ୍ୟ ହୋଇଗଲା । ଲୋକେ ତାର ଛାଇ ବର୍ତ୍ତି ସୁଦ୍ଧା ପାଇଲେ ନାହିଁ ।

# ଜମ୍ବୁ

ଜମ୍ବୁ ତଳୁ ଏ ଥାଳି ଜିନିଷ ଧରି କୋଠାଉପରକୁ ଛୁଟିଗଲା ଏବଂ ଚମ୍ପା ଆଗରେ ତାହା ନେଇ ଥୋଇ ଦେଲା। ଚମ୍ପା ମହା ଆନନ୍ଦରେ ସେଥିରୁ କିଛି ଖାଇଲା ଓ ଅବଶିଷ୍ଟ ଜିନିଷତକ ଜମ୍ବୁକୁ ଖୁଆଇ ଦେଲା। ଚମ୍ପା ଫଳମୂଳ ଓ କଂଚା ମାଂସ ଖାଉଥିବା ଅରଣ୍ୟ ପଶୁ, ଲୁଚି ଲଡ଼ୁ ପରି ଏତେ ମଧୁର ଖାଦ୍ୟ ଖାଇ କିପରି ଯେ ତାର ଆନନ୍ଦ ହେଲା ତାହା କହିବା ଅସମ୍ଭବ। ଦିନସାରା ସେ ଦୁହେଁ ସେ କୋଠା ଉପରେ ରହି ପରସ୍ପରକୁ ଖୁବ୍ ସ୍ନେହ କଲେ ଏବଂ ହସି ଖେଳି ସମସ୍ତ ଦିନ କଟାଇ ଦେଲେ। ତାପରେ ସନ୍ଧ୍ୟା ବେଳକୁ ଚମ୍ପା ପୁଣି ଖାଇବାକୁ ମାଗିଲା। ସେତେବେଳକୁ ଅନ୍ଧାର ହୋଇ ଯାଇଥିଲା। ଜମ୍ବୁ ଲୁଚିହୋଇ ପୁଣି ସହର ଭିତରକୁ ଚାଲିଗଲା ଏବଂ ଗୋଟାଏ ବଡ଼ ଗୁଡ଼ିଆ ଦୋକାନରେ ପଶିଯାଇ ସେଠାରୁ ଦହାଣ୍ଡି ଲଡ଼ୁ ଓ ଅନ୍ୟ ମିଷ୍ଟାନ୍ନ ଧରି ଚମ୍ପା ନିକଟକୁ ଚାଲିଗଲା। ଚମ୍ପା ତହିଁରୁ ସାମାନ୍ୟ କିଛି ଖାଇ ଅବଶିଷ୍ଟ ସବୁ ଜମ୍ବୁକୁ ଖୁଆଇ ଦେଲା। ଜମ୍ବୁ ଦହାଣ୍ଡି ମିଷ୍ଟାନ୍ନ ଖାଇବାରେ ତାର ପେଟ ପୂରିଲା କି ନାହିଁ ତାହା କହି ହେବ ନାହିଁ। ଗୋଟାଏ ସମ୍ବରକୁ ଦୁଇ ଦିନରେ ଖାଇ ଯେ ହଜମ କରିପାରେ, ଦହାଣ୍ଡି ମିଷ୍ଟାନ୍ନ ତା ପକ୍ଷରେ ସାମାନ୍ୟ ବୋଲି ମନେହୁଏ। ଯାହାହେଉ ସେ ଖାଇସାରି ଚମ୍ପାର ହାତତଳେ ବହେ ନାଚିଲା ଏବଂ ତାକୁ କୁଣ୍ଢେଇ ବହୁତ ଆଦର କଲା। ତା ପରେ ଉଭୟେ ସେଠାରେ ଶୋଇ ପଡ଼ିଲେ।

---

## —ସତର—

ଜମ୍ମୁ ଚମ୍ପାଙ୍କୁ ପାଦଙ୍କମାଝରେ ତାଙ୍କୁ ଧରନେଇ କୁଆଡ଼େ ଅଦୃଶ୍ୟ ହୋଇଯିବାପରଠାରୁ ଆଜି ସହର ଭିତରେ କେଉଁଠାରେ ତାର ଅତ୍ୟାଦ୍ଭୁତର ଖବର ଶୁଣାଗଲା ନାହିଁ । ଭୋର ବେଳକୁ ଲୋକେ ଟିକିଏ ସାହସ ଧରି ଘରୁ ବାହାରକୁ ଆସିଲେ ଏବଂ ପରସ୍ପର ଭିତରେ ଜମ୍ମୁ ବିଷୟରେ ଅନେକ ଆଲୋଚନା କଲେ । ସକାଳ ନଅଟା ଭିତରେ ଜମ୍ମୁର ଅତ୍ୟାଦ୍ଭୁତ ଖବର ସହରସାରା ବ୍ୟାପ୍ତ ହୋଇଗଲା । ଆଜି ତାହା ମୁହଁରେ କେଉଁ କଥା ନାହିଁ—ଖାଲି ଜମ୍ମୁ କଥା । ଯେଉଁ ଆଡ଼େ ଶୁଣିବ କେବଳ ସେହି ଖବର ଓ ସେହି ଚର୍ଚ୍ଚା । ସବୁ ଖବର ଏକତ୍ର ସଂଗୃହୀତ ହୋଇ ଦିନ ବାରଟା ବେଳକୁ ଖବର କାଗଜମାନଙ୍କରେ ବାହାରିଲା । କାଗଜର ଏମୁଣ୍ଡ ସେମୁଣ୍ଡ ଯାଏ କେବଳ ଜମ୍ମୁ ଖବର । ଗୋଟାଏ ନୂଆ ଖବର ତହିଁରେ ବାହାରିଥିଲା ଯେ ଜମ୍ମୁ ସକାଳ ଆଠଟାବେଳେ ପୁଣି ସହର ଭିତରେ ଦେଖାଦେଇଥିଲା । ମାତ୍ର ସେ ତାହା ପୂର୍ବ ଚୋରିପରି ଅତ୍ୟାଦ୍ଭୁତ ଢଙ୍ଗରେ ଗୋଟାଏ ଗୁଡ଼ିଆ ଦୋକାନରୁ ଦୁଇ ଥାଳି ଲଡ଼ୁ ଲୁଟି ଧରି ପଳାଇ ଗଲା । ସେ ବଜାରର ଲୋକେ ତା ବିଷୟରେ ଆଗରୁ ଜାଣି ଯାଇଥିଲେ ଏବଂ ଗୁଡ଼ିଆ ଓ ତା ଚାକରମାନେ ତାକୁ ଦେଖି ଅଜ୍ଞାନ ହୋଇ ପଡ଼ିଥିଲେ । ଦିନତମାମ ଲୋକେ ଜମ୍ମୁ ବିଷୟରେ ଛାନିଆ ହୋଇ ଆଜି ତାଙ୍କ ଦୋକାନ ବଜାର ଫିଟେଇଲେ ନାହିଁ ।

ଯେଉଁ ସଡ଼କମାନ ଅହରହ ଯାନ ବାହନ ଓ ମନୁଷ୍ୟରେ ଗଣ୍ଡି ପଡ଼ି ଯାଉଥିଲା, ତହିଁରେ ଏକମାତ୍ର ଗୋଟାଏ ମନୁଷ୍ୟ ମୁଦ୍ଧା ଚାଲିବାର ଦେଖାଗଲା ନାହିଁ ।

ସରକାର ସନ୍ଧ୍ୟା ପାଞ୍ଚଟା ବେଳକୁ ଗୋଟାଏ ନୋଟିସ ବୁଲାଇ ଜଣାଇ ଦେଲେ ଯେ ଜମ୍ବୁ ଆଉ ସହର ଭିତରେ ନାହିଁ, କାଲି ପାହାନ୍ତାରୁ ସହର ଛାଡ଼ି କୁଆଡ଼େ ପଳାଇ ଯାଇଅଛି । ସେ ଚମ୍ପକସୁନ୍ଦରୀ ନାମକ ସର୍କସ ମାଷ୍ଟରଙ୍କ କନ୍ୟାକୁ ଖୁବ୍ ଭଲ ପାଉଥିଲା । ତାକୁ ସହର ମଧ୍ୟରେ ଖୋଜି ଖୋଜି ନ ପାଇ ସେ ଏତେ ଗୋଳମାଳ କରୁଥିଲା । ପାହାନ୍ତା ସମୟରେ ଚମ୍ପକସୁନ୍ଦରୀକୁ ପାଇ ତାକୁ ସାଙ୍ଗରେ ଧରି କୁଆଡ଼େ ଚାଲି ଯାଇଅଛି । ସେହି ସମୟରୁ ସବୁ ଗୋଳମାଳ ଥଣ୍ଡା ପଡ଼ିଯାଇଛି । ସରକାର ତାକୁ ଖୋଜିବାକୁ ବନ୍ଦୋବସ୍ତ କରୁଛନ୍ତି । ସହରବାସୀଙ୍କୁ ଅନୁରୋଧ ଯେ ସେମାନେ ଆଉ ଜମ୍ବୁ ଭୟରେ କାତର ହୁଅନ୍ତୁ ନାହିଁ । ନିଜ ନିଜ କାରବାରରେ ଲାଗନ୍ତୁ । ସରକାରଙ୍କଠାରୁ ଏ ଖବର ପାଇ ଲୋକେ ମନରୁ ଭୟ ଛାଡ଼ିଦେଲେ ଏବଂ ନିଜ ନିଜ ବ୍ୟବସାୟରେ ମନ ଦେଲେ । ସନ୍ଧ୍ୟା ବେଳକୁ ଦୋକାନ ବଜାର ଫିଟିଲା ଏବଂ ଲୋକେ ନିର୍ଭୟରେ କାରବାର ଜମେଇ ଦେଲେ ।

———

## —ଅଠର—

ଏଣେ ସର୍ଦ୍ଦାର ମାଷ୍ଟରଙ୍କ ଅବସ୍ଥା ସବୁଠାରୁ ବେଶୀ ଶୋଚନୀୟ ହୋଇ ପଡ଼ିଲା । ମୁକ୍ତିଯୁଦ୍ଧ ଚାଲିବା ପର୍ଯ୍ୟନ୍ତ ସେ ନିରାପଦରେ ସର୍ଦ୍ଦାର ହୋଇଥିଲେ ଏବଂ ସବୁଅଡ଼ ଜର୍ମାନ ଶାସନାଧୀନରେ ରହିଥିଲେ । ହେଲେ ଯେତେବେଳେ ପିଞ୍ଜିରି ଛାଡ଼ିଦେଇ ସର୍ଦ୍ଦାରଙ୍କୁ ମାରି ପକାଇଲେ, ସେତେବେଳେ ଭୟାନକ ଗୋଳମାଳ ଭିତରେ ସେ କୋଠାଏ ନିରାପଦ ଜାଗାରେ ଲୁଚି ରହିଥିଲେ । ସକାଳ ହେବାରୁ ସେ ସେଠାରୁ ବାହାରି ଗୃହ ଅଡ଼କୁ ଆସିବାରୁ ଦେଖିଲେ ଯେ ତାଙ୍କର ସର୍ଦ୍ଦାରୀର ଏକାବେଳକେ ନଷ୍ଟ ହୋଇ ଯାଇଛି । ଜିନିଷ ପତ୍ର ସବୁ ଭାଙ୍ଗି ଚୁରି ଶେଷ ହୋଇ ଯାଇଛି ଏବଂ ତାଙ୍କ କର୍ମଚାରୀମାନେ କିଏ କୁଆଡ଼େ ପଳାଇ ଯାଇଛନ୍ତି । ସେ ବଡ଼ ବିକଳ ହୋଇ ହୁରି ପକାଇଲେ । ଲୋକମାନେ ଯେ ଯୁଆଡ଼େ ଲୁଚି ଛପି ଥିଲେ ମାଷ୍ଟରଙ୍କ ହୁରି ଶୁଣି ତାଙ୍କ ପାଖକୁ ଧାଇଁ ଆସିଲେ । ସେମାନେ ମାଷ୍ଟରଙ୍କୁ ଦେଖିବେ ବୋଲି ଆଶା କରି ପାରି ନ ଥିଲେ । ସମସ୍ତେ ଆସି ଜୁଟିବା ପରେ ମାଷ୍ଟର ସମସ୍ତଙ୍କୁ ବଡ଼େ ଉଲ୍ଲଟନ କରି କଥା ପଚାରିଲେ । ତାହା-ଦେଖି ଲୋକମାନେ ମଧ୍ୟ ବ୍ୟାକୁଳ ହେଲେ । ସର୍ଦ୍ଦାରମାନେ ମଲା ସର୍ଦ୍ଦାରଙ୍କର ଖଣ୍ଡ ଖଣ୍ଡ ଦେହକୁ ଏକାଠି କରି ବଡ଼େ ଦୁଃଖପ୍ରକାଶ କଲେ ଏବଂ ନିଆଁ ଜାଳି ତାକୁ ଦାହ କଲେ । ତାପରେ ସମସ୍ତେ ଲାଗି ପଡ଼ି ସବୁ ଜିନିଷପତ୍ର ଏକାଠି କଲେ ଏବଂ ଖିଅପି ଥର ଅପେକ୍ଷାରେ ରହିଲେ ।

ଏ ସମୟରେ ସହରଭିତରେ ବଢ଼ିଥିବା ଗଣ୍ଡଗୋଳ ବିଷୟ ମାଷ୍ଟରଙ୍କ କାନକୁ ଆସିଲା ଏବଂ ସେହି ସଙ୍ଗେ ସଙ୍ଗେ ସେ ଖବର ପାଇଲେ ଯେ ଜମ୍ମୁ ଟମୋକୁ ଖୋଜିଖୋଜି ସହରଟା ଯାକ ଅସ୍ତ ବ୍ୟସ୍ତ କରି ଦେଉଛନ୍ତି । ତେଣୁ ସେ ତାଙ୍କ ପ୍ରାଣର କନ୍ୟା ଟମୋକୁ ଦେଖିବା ପାଇଁ ବନ୍ଧୁଙ୍କ ଘରଠାକୁ ଦୌଡ଼ିଲେ । ସେଠାରେ ଯାଇ ଯାହା ଦେଖିଲେ ସେଥିରେ ତାଙ୍କର ପରାଣ ଉଡ଼ିଗଲା । ବନ୍ଧୁଙ୍କ ଘରଦ୍ୱାର ଛିନ୍ନଛତ୍ର ହୋଇ ଯାଇଥିଲା, ଜିନିଷପତ୍ର ସବୁ ଭାଙ୍ଗିରୁଜି ଧ୍ୱଂସ ହୋଇ ଯାଇଥିଲା ଏବଂ ସେମାନଙ୍କ ଅବସ୍ଥା ଶୋଚନୀୟ ହୋଇ ପଡ଼ିଥିଲା । ବନ୍ଧୁ ଓ ତାଙ୍କ ପରିବାରବର୍ଗ ଘୋର ମନଦୁଃଖରେ ବସି ନିଜ ଦୁର୍ଭାଗ୍ୟ ବିଷୟ ଚିନ୍ତା କରୁଥିଲେ । ମାଷ୍ଟର ସେଠାରେ ପହଞ୍ଚିବା ମାତ୍ରେ ଗୋଟାଏ କନ୍ଦନର ରୋଳ ଉଠିଲା । ସମସ୍ତେ ଟମୋ ନାମ ସ୍ମରଣ କରି ବ୍ୟାକୁଳ ହୋଇପଡ଼ିଲେ । ମାଷ୍ଟର ସେମାନଙ୍କୁ ବହୁ ପରିମାଣରେ ଆଶ୍ୱସ୍ତ କରି ଖବର ବୁଝିଲେ ଯେ ଜମ୍ମୁ ଟମୋକୁ ଧରି କୁଆଡ଼େ ଅଦୃଶ୍ୟ ହୋଇଯାଇଛି । ଏ ଘଟଣାରେ ତାଙ୍କର ଛାତି ଫାଟିଗଲାପରି ଲାଗିଲା । ସେ ବ୍ୟାକୁଳ ହୋଇ ବହୁତ କାନ୍ଦିଲେ ଏବଂ ଆଉ ଟମୋକୁ ଜୀବନରେ ଦେଖିପାରିବେନାହିଁ ବୋଲି ହତାଶହୋଇପଡ଼ିଲେ ।

ଏ ସମୟରେ ତାଙ୍କ ନିକଟକୁ ଖବର ଆସିଲା ଯେ ସର୍ଜ୍ଜଣ ସେଣ୍ଟ୍ରାଲକୁ ଲାଟସାହେବ ଆସି ତାଙ୍କୁ ଦେଖିବାକୁ ଚାହୁଁଛନ୍ତି । ମାଷ୍ଟର ବନ୍ଧୁଙ୍କୁ ସାଙ୍ଗରେ ଧରି ଶୀଘ୍ର ସେଠାରୁ ଗଲେ ଏବଂ ସେଣ୍ଟ୍ରାଲଠାରେ ଲାଟସାହେବଙ୍କୁ ଦେଖାକଲେ । ଲାଟ ସେତେବେଳକୁ

ସାର୍ଜେଣ୍ଟପେଣ୍ଡ୍ରିକ ଓ ଅନ୍ୟାନ୍ୟ ସର୍ଭଣ ଅଞ୍ଚଳର ଶୋଚନୀୟ ଅବସ୍ଥା ଦେଖି ବଡ଼ ମନୋକଷ୍ଟପୂର୍ବକ ଅପେକ୍ଷା କରୁଥିଲେ । ମାଷ୍ଟରଙ୍କୁ ଦେଖି ସେ ବହୁତ ଅଶ୍ୱାସନା ଦେଲେ ଏବଂ ଯାହାସବୁ କ୍ଷତି ହୋଇଅଛି ତାହା ପ୍ରଭୁଙ୍କ ଦୟାରୁ ଅଳ୍ପଦିନ ମଧ୍ୟରେ ପୂରଣ ହୋଇଯିବ ବୋଲି ଆଶା ପ୍ରକାଶ କଲେ । ଏଥିପାଇଁ ମିଷ୍ଟର ସରକାରଙ୍କୁ ଯାହା ସାହାଯ୍ୟ ଚାହିଁବେ ତା ସେ ସାଧ୍ୟମତେ ପୂରଣ କରି ଦେବେ ବୋଲି ନିର୍ଭର ଭରସା ଦେଲେ । ମାଷ୍ଟର ଏହା ଶୁଣି କୃତଜ୍ଞତାରେ ନଇଁ ପଡ଼ିଲେ ଏବଂ ଲର୍ଡଙ୍କ ପାଦତଳେ ପଡ଼ି ମୁଣ୍ଡ ଲଗାଇଲେ । ଏ ସମୟରେ ତାଙ୍କ ବନ୍ଧୁ ମାଷ୍ଟରଙ୍କ କନ୍ୟା କିପରି ଜମ୍ମୁ ଦ୍ୱାରା ଅପହୃତ ହୋଇଅଛି ତାହା ଜଣାଇଲେ । ଲର୍ଡ ତାହା ଶୁଣି ବହୁତ ବିଚଳିତ ହୋଇ ପଡ଼ିଲେ ଏବଂ ସାଙ୍ଗେ ସାଙ୍ଗେ ପୁଲିସ୍ ସାହେବଙ୍କୁ ଡକାଇ ହୁକୁମ ଦେଲେ, "ଜମ୍ମୁ ମାଷ୍ଟରଙ୍କ କନ୍ୟାକୁ ଅପହରଣ କରି କୁଆଡ଼େ ପଳାଇ ଯାଇଛି । ଅତଏବ ଅବିଳମ୍ବେ ପୋଲିସ ଫୋର୍ସ ଧରି ତା ପଛରେ ଚାଲନ୍ତୁ ଏବଂ ଯେ କୌଣସିମତେ କନ୍ୟାକୁ ଉଦ୍ଧାର କରନ୍ତୁ ।" ସାହେବ ସେ ହୁକୁମ ପାଇ ବନ୍ଧୁକ ଧରି ସହର ଭିତରକୁ ଗଲେ ଏବଂ ତୋପ ବନ୍ଧୁକ ଦେଇ ଶହ ଶହ ସିପାହୀ ଚାରିଆଡ଼କୁ ପଠାଇ ଜମ୍ମୁକୁ ଖୋଜିବାରେ ଲାଗିଲେ ।

ଲର୍ଡ ସାହେବ ବିଦାୟହୋଇ ଗଲାପରେ ସର୍ଭଣ ଦର୍ମଗ୍ରସ୍ତ-ମାନେ ଜମ୍ମୁକୁ ଖୋଜିବାକୁ ଦଳ ଦଳ ହୋଇ ବାହାରି ପଡ଼ିଲେ । ପୋଲିସ୍ ବାଦ୍ ଓ ସେମାନେ ନାନାସ୍ଥାନ ଅନୁସନ୍ଧାନ କରି ସହର ମଧ୍ୟ ଖାଲିପକାଇଲେ । ସହରବାସୀମାନେ ସେମାନଙ୍କୁ ଏ କାମରେ

ଖୁବ୍ ସାହାଯ୍ୟ କଲେ । ସହର ତମାମ୍ ଅନୁସନ୍ଧାନ କରି ଜମ୍ମୁର କୌଣସି ଠିକଣା ନ ମିଳିବାରୁ ସେମାନେ ଦଳ ଦଳ ହୋଇ ସହର ଚଳ ଅଞ୍ଚଳ ସବୁ ଖୋଜିଲେ । ଦିନତମାମ ଜମ୍ମୁର କୌଣସି ଠିକଣା ନପାଇ ସୂର୍ଯ୍ୟାସ୍ତ ସମୟକୁ ସେମାନେ ହତାଶ ହୋଇ ପଡ଼ିଲେ । ସନ୍ଧ୍ୟା ହେଉ ହେଉ ଅନ୍ଧାର ମାଡ଼ି ଯାଉଥାଏ, ଏମାନଙ୍କ ବ୍ୟାକୁଳତା ସେତେକେ ବଢ଼ୁଥାଏ । ପ୍ରାୟ ଅଠଟା ବେଳକୁ ହଠାତ୍ ଗୋଟାଏ ଖବର ମିଳିଲା ଯେ ଜମ୍ମୁ ଗୋଟାଏ ହାଲୁଇ ଦୋକାନରୁ ସେହିକ୍ଷଣି ଦୁଇହାଣ୍ଡି ମିଷ୍ଟାନ୍ନ ଧରି କୁଆଡ଼େ ଚାଲି ଯାଇଛି । ତାହା ଶୁଣି ସେମାନେ ଅନେକ ଖୋଜା ଖୋଜି ବାହାରେ ଯେତେ ବଗିଚା ଓ କୋଠାବାଡ଼ି ଥିଲା ତାହା ସବୁ ଅନୁସନ୍ଧାନ କଲେ । ଅବଶେଷରେ ସେହି ଭଙ୍ଗା ଦୋମହଲା କୋଠା ନିକଟକୁ ଯାଇ ଦେଖିଲେ କୋଠା ଉପରେ ଜମ୍ମୁ ନାଚୁଛି ଏବଂ ଚମ୍ପା ହସି ହସି ଲୋଟି ଯାଉଛି । ସେମାନେ ଏ ଘଟଣା ଦେଖି ସେଠାରେ ଲୁଚିରହିଲେ ଏବଂ ଯଥା ସମୟରେ ଗୋଟାଏ ସୁଯୋଗ ଉଚିତ ସମୟରେ ଘଟିଯାଇପାରେ ଭାବି ଅପେକ୍ଷା କରିବାକୁ ଲାଗିଲେ । ଅନେକ ସମୟ ଗଲା । ରାତି ବାରଟା ବେଳକୁ ସେ ଦୁହିଁଙ୍କର ଆଉ କୌଣସି ସାଡ଼ାଶବ୍ଦ ପାଇଲା ଭଳି ନାହିଁ । ତହୁଁ ଜଣେ ଜଣେ ଚୁପ ଚୁପ ଯାଇ କୋଠା ଉପରକୁ ମୁଣ୍ଡ ବଢ଼ାଇ ଦେଖିଲେ — ଜମ୍ମୁ ଗାଢ଼ ନିଦ୍ରାରେ ଶୋଇପଡ଼ିଛି ଏବଂ ଚମ୍ପା ମଧ୍ୟ ଗୋଟାଏ ଜାଗାରେ ଶୋଇ ଘୋଡ଼ ହୋଇଛି । ଏହା ଦେଖି ସେ ଦୁହେଁ ମନେ କଲେ, ଚମ୍ପାକୁ ନିଦ ହୋଇନାହିଁ, ମାତ୍ର ଜମ୍ମୁ ଗାଢ଼ନିଦ୍ରାରେ ଶୋଇଛି । ସେମାନେ ଗୋଟାଏ ବଡ଼ା ବଢ଼ାଇ ଚମ୍ପାକୁ ଇସାସ

ଦେଲେ । ଚମ୍ପା ସେ ଅଡ଼କୁ ଗୁହ୍ଣିଙ୍କ ମାତ୍ରକେ ଏମାନେ ତାକୁ ଦେବାକୁ ସେ ନିଃଶବ୍ଦରେ ତାଙ୍କ ପାଖକୁ ଗୁଲି ଅସିଲା । ସେମାନେ ତାକୁ ସାବଧାନରେ ତଳକୁ ଖସାଇ ନେଇ ସାଙ୍ଗରେ ଧରି ଦ୍ରୁତବେଗରେ ସହର ଭିତରକୁ ପଳାଇଗଲେ । ସର୍କସ ନଗରରେ ପହଞ୍ଚିବା ମାତ୍ରକେ ମାଷ୍ଟର କନ୍ୟାକୁ ଦେଖି ବାନ୍ଧ ପକେଇଲେ ଏବଂ ତାକୁ ନାଗପୁରରେ ରଖିବା ନିରାପଦ ନୁହେଁ ବୋଲି ବିଗୁରି ସେହି ରାତିରେ ରେଳରେ ବୋମ୍ବାଇ ସହରକୁ ପଠାଇଦେଲେ ।

ଚମ୍ପା ଢଡ଼ାଇ ହୋଇଥିବା ବିଷୟ ସେହି ରାତିରେ ପୋଲିସ ଜାଣି ପାଇ ଜମ୍ବୁ ଶୋଇଥିବା କୋଠା ନିକଟକୁ ଦୌଡ଼ିଲେ ଏବଂ ତାକୁ ଘେରି ସକାଳ ପର୍ଯ୍ୟନ୍ତ ଅପେକ୍ଷା କଲେ । ସେମାନେ ବହୁତ ତୋପ ବନ୍ଧୁକ ସାଙ୍ଗରେ ରଖିଥିଲେ ଏବଂ ଜମ୍ବୁକୁ ଦେଖିଲାମାତ୍ରକେ ତୋପ ମାରି ତାକୁ ଉଡ଼ାଇ ଦେବାକୁ ହୁକୁମ ପାଇଥିଲେ ।

ଗୁରଟା ସମୟକୁ ଜମ୍ବୁର ନିଦ ଭାଙ୍ଗିଲା । ସେ ଚମ୍ପାକୁ ପାଖରେ ନ ଦେଖି ଚମକି ଉଠି ପଡ଼ିଲା ଏବଂ ଗୁରିଅଡ଼କୁ ଅଖି ବୁଲାଇ ଦେଖିଲା । ଚମ୍ପା କୋଠା ଉପରେ ନଥିବାର ଦେଖି ସେ ଗୁରିଅଡ଼କୁ ଅନାଇ ଅନେକ ଖୋଜିଲା ଏବଂ କୌଣସିଠାରେ ତାର ଖଣ୍ଡବର୍ଣ୍ଣ ନ ପାଇ ବହୁତ ବ୍ୟାକୁଳ ହୋଇ ଉଠିଲା । ସେତେବେଳକୁ ଅନ୍ଧାର ଗୁରିଅଡ଼େ ଘୋଟି ରହିଥିଲା । ଜମ୍ବୁ ସେହି ଅନ୍ଧାରରେ କୋଠାରୁ ତଳକୁ ଡେଇଁ ପଡ଼ି ଭଙ୍ଗାଘର ଏପଟ ସେପଟ ବହୁତ ତଲାସିଲା । ତାପରେ ପଦାକୁ ଅସି ଦେଖିଲା— ବହୁତ ସିପେଇ ତୋପ ବନ୍ଧୁକ ଧରି ଗୁରିଅଡ଼େ ଘେରି ରହିଛନ୍ତି ।

ସେ ମନେ କଲା, ସେମାନେ ତାର ପ୍ରିୟତମା ଚମ୍ପାକୁ କୁଆଡ଼େ ନେଇ ଯାଉଛନ୍ତି । ସିପେଇମାନେ ରାତିଯାକ ଘୁଁ ଘୁଁ ପାହାନ୍ତା ବେଳକୁ ଟିକିଏ ଢୁଳେଇ ପଡ଼ିଥିଲେ । ଜମ୍ବୁ ସେମାନଙ୍କ ଅଡ଼କୁ ଦୌଡ଼ିଯାଇ ଭୟଙ୍କର ଜୋରରେ ସେମାନଙ୍କୁ ଆକ୍ରମଣ କଲା । ସିପେଇମାନେ ଆଖି ମଳି ମଳି ଜମ୍ବୁକୁ ଦେଖିଲା ମାତ୍ରକେ ଭୟରେ ଥରିଗଲେ ଏବଂ ବନ୍ଧୁକସବୁ ଉଠାଇଲାବେଳକୁ ଜମ୍ବୁ ସେମାନଙ୍କ ଭିତରୁ ଅନେକଙ୍କୁ ମାରି ଖଣ୍ଡିଆ ଖାବରା କରିଦେଲା, ତାପରେ କେତେକ ସିପେଇଙ୍କୁ ଗୋଟାକ ଉପରେ ଗୋଟିଏ କଚୁଡ଼ି ଦେଇ ଏବଂ କେତେକଙ୍କୁ ଗୋଡ଼ ଧରି ବୁଲାଇ ଦୂରକୁ ଫିଙ୍ଗି-ଦେଲା । ହଠାତ୍ ତୋପସବୁ ଗୁଡ଼ୁମ୍ ଗୁଡ଼ୁମ୍ ହୋଇ ଫୁଟିଲା ଏବଂ ଅନେକ ସିପେଇ ସେମାନଙ୍କ ବନ୍ଧୁକଧରି ଜମ୍ବୁ ଆଡ଼କୁ ଲକ୍ଷ୍ୟ କରି ଲାଗିଲେ । ଜମ୍ବୁ ସେମାନଙ୍କ ଭିତରେ ଚୁଡ଼ାଏ ଗୋଳମାଳ କରିଦେଇ କୁଦାଇ କୁଦାଇ ବହୁତ ଦୂରକୁ ପଳାଇଗଲା । ସିପେଇମାନେ ତା ଶୁଙ୍ଘକୁ ଲକ୍ଷ୍ୟ କରି ତା ପଛେ ପଛେ ତଡ଼ିଲେ । ମାତ୍ର ଜମ୍ବୁ କୁଦିମାରି ଅନେକ ଦୂରକୁ ଡେଇଁ ପଳାଇ ଗଲା । ସିପେଇମାନେ ତା ପଛେ ପଛେ ଗୋଡ଼ାଇଲେ; ମାତ୍ର ତାର କୌଣସି ପତ୍ତା ପାଇଲେ ନାହିଁ । ସକାଳ ହେଲାବେଳକୁ ଜମ୍ବୁ ଅନେକ ଗାଁ । ଗଣ୍ଡା ପାର ହୋଇ ପ୍ରବଳ ବେଗରେ ଯାଇ ମହାବଣ ଭିତରେ ପଶିଗଲା । ଲୋକମାନେ ତା ବିଷୟରେ ବହୁତ କୁହା-କୁହି ହେଲେ ଏବଂ ଭୟରେ ଡରିଯାଇ ରାତି କବାଟ ପକେଇ ଲାଗିଲେ । ସିପେଇମାନେ ଦିନ ଦଶଟା ବେଳକୁ ଲୋକଙ୍କଠାରୁ ଶୁଣିଲେ ଯେ ଜମ୍ବୁ ପଳାଇ ଯାଇ ମହାବଣ ଭିତରେ ପଶିଗଲାଣି । ସେମାନେ ଆଉ ତା ପଛରେ ନ ଯାଇ ସହରକୁ ଫେରିଗଲେ । ସକାଳେ ଜଣାଗଲା, ଜମ୍ବୁର ରାତି ଆକ୍ରମଣରେ ଦଶଜଣ ସିପେଇ ମରିଯାଇ ଥିଲେ ଓ ପଚିଶି ଜଣ ଆହତ ହୋଇ ପଡ଼ିଥିଲେ ।

—ଉଣିଶି—

ଏତେ ସିପେଇ ମଲେ ଏତେ ଲୋକ ଗଣ୍ଡି ଥ ଗାଁଛଡ଼ା ହେଲେ; ତଥାପି ଜମ୍ମୁ ନ ମରୁ ବା ଧରା ନ ହୋଇ ପୁଣି ବଣ ଭିତରକୁ ପଳେଇଗଲେ। ସରକାର ଲୋକଙ୍କୁ ନିରାପଦ କରି ପୁଣି ଗାଁ ଗଣ୍ଡାକୁ ଫେରାଇ ଆଣିବାକୁ ଯାହା ଚାହୁଁଥିଲେ ତାହା ହୋଇ ପାରିଲା ନାହିଁ। ଏଥିପାଇଁ ସର୍କମୋଷ୍ଟର ବହୁତ କ୍ଷତି ସହିଲେ ଏବଂ ସରକାରଙ୍କର ମଧ୍ୟ ଅନେକ ଲୋକସାନ ହେଲା। ସାଧାରଣ ଲୋକଙ୍କର ଯାହା କ୍ଷତି ହେଲା ତାହା ସେମାନେ ବହୁକାଳରେ ପୂରଣ କରି ପାରିବେ ନାହିଁ। ଏଣୁ ସାଧାରଣରେ ଯେପରି ଅଶାନ୍ତି ହେଲା, ସରକାରଙ୍କର ମଧ୍ୟ ସେହିପରି ଅଶାନ୍ତି ହେଲା। ଏଥିପାଇଁ କଅଣ କରିବେ ବୋଲି ସରକାରୀ ମହଲ ବିଶେଷ ଚିନ୍ତିତ ହୋଇପଡ଼ିଲେ। ନାନାଦି ଆଲୋଚନା ହେଲା। ସମସ୍ତେ ଏକମତରେ ସ୍ଥିର କଲେ ଯେ ଦୁଇ ତିନିମାସ ପରେ ପୁଣି ଜମ୍ମୁ ଶିକାର ଅଭିଯାନ କରାଯିବ। କାରଣ ଜମ୍ମୁ ଏତେ ଗୋଳମାଳ ଭିତରେ ପଡ଼ି ପଳାଇ ଯାଇଛି। ଦିନାକେତେ ତା ମନ ବିଶେଷ ଚଞ୍ଚଳ ଥିବ। ସେ ଅଧିକ ଧରାଛୁଆଁ ଦେବନାହିଁ। ମାସେ ଦିମାସ ପରେ ତା ମନ ଟିକିଏ ଥଣ୍ଡା ପଡ଼ିଯିବ। ସେ ବଣ ଜନ୍ତୁମାନଙ୍କ ସଙ୍ଗରେ ଥୋଡ଼ାଏ ଚଲାଚଲ ହୋଇଗଲା ପରେ ତାକୁ ପୁଣି ଆକ୍ରମଣ କଲେ ସେ ଆଉ ଗୋଳମାଳ କରିବ ନାହିଁ। ସହଜରେ ଧରା ପଡ଼ିବ, ନୋହିଲେ ମରିବ।

ସରକାରୀ ମହଲରେ ଏପରି ବିଚାର ଯେଉଁଦିନ ସବୁ, ତା

ଉତ୍କଣ୍ଠା

ପରଦିନ ସର୍କସ ମାଷ୍ଟରଙ୍କୁ ଡକାଇ ଲିଃ ସାହେବ ଏକଥା କହିଲେ। ତହିଁରେ ସର୍କସମାଷ୍ଟର ଏକମତ ହୋଇପାରିଲେ ନାହିଁ। ସେ କହିଲେ, "ଆମ୍ଭେମାନେ ବଣରୁ ଜମ୍ବୁକୁ ଓ ଅନ୍ୟ ପଶୁଙ୍କୁ ଧରିଆଣିବାରୁ ରହିଯାଇଥିବା ପଶୁମାନେ ଭୟରେ ବିଚଳିତ ହୋଇଯାଇଥିଲେ। ସେମାନେ ଦହଳରେ ଏକାଠେଇ ହୋଇ ନ ଥିବେ; ଯେ ଯୁଆଡ଼େ ନିଜଦେହକୁ ଛପାଇ ରହିଯାଇଥିବେ। ଜମ୍ବୁ ବର୍ତ୍ତମାନ ପଳାଇ ଯାଇଥିଲେହେଁ ତା ମନ ଅସ୍ଥିର ହୋଇଯାଇଥିବ। ସେ ଏହି ଅସ୍ଥିର ମନରେ ବଣରେ ଏକାକେତେ ଶଙ୍କିତ ହୋଇ ରହିବ। ତା ପାଖରେ କେହି ପଶୁ ନଥିବେ। ବଣର ସାଧାରଣ ପଶୁମାନେ କେହି ନିକଟ ଭବିଷ୍ୟତରେ ଆସି ତା ପାଖରେ ଯୁଟିବେ ନାହିଁ। ଏପରି ଅବସ୍ଥାରେ ଜମ୍ବୁ ଶୀଘ୍ର ଧରା ପଡ଼ିପାରେ। ଡେରି ହେଲେ ସବୁ ଜନ୍ତୁ ଏକାଠେଇ ହୋଇ ଯିବେ। ତା ହେଲେ ଜମ୍ବୁ ଆଉ ମୋଟେ ଧରାପଡ଼ି ପାରିବ ନାହିଁ।" ମାଷ୍ଟରଙ୍କର ଏକଥା ଲିଃସାହେବଙ୍କ ମନକୁ ଖୁବ୍ ପାଇଲା। ଜମ୍ବୁକୁ ପୁଣି ଧରିଆଣିବାକୁ ସେ ମାଷ୍ଟରଙ୍କ ଉପରେ ଭାରଦେଲେ ଏବଂ ସେଥିପାଇଁ ଯାହା ଯାହା ଦର୍କାର ତାହା ସବୁ ମାଷ୍ଟର ଲୋଡ଼ିଲେ ସେ ଯୋଗାଇଦେବେ ବୋଲି କହିଲେ।

ମାଷ୍ଟର ଲିଃସାହେବଙ୍କ ଦରବାରରୁ ଫେରିଆସି ତାଙ୍କ କର୍ମଗୃହୀମାନଙ୍କୁ ଏକଥା ଜଣାଇଲେ। ପୁଣି ଥରେ ଜଙ୍ଗଲ ଭିତରକୁ ଯାଇ ନାନା ଦୁଃଖ ସହିବା ଏବଂ ଦରକାର ହେଲେ ଜୀବନ ସୁଦ୍ଧା ଦେବାକୁ ପଡ଼ିବ ବୋଲି ସେମାନେ ମଙ୍ଗିଲେ ନାହିଁ। ମାଷ୍ଟର ସେମାନଙ୍କୁ ଅନେକ ବୁଝାଇଲେ। ସେ କହିଲେ, "ସରକାରଙ୍କ

ଆଦେଶ ଲଙ୍ଘନକଲେ ବିପଦ ପଡେ ପଡେ । ଆମ୍ଭେମାନେ ଦଣ୍ଡେ ହେଲେ ଚଳିପାରିବା ନାହିଁ । ତାଙ୍କ ଆଦେଶରେ ଜୀବନ ଉପରକୁ ବିପଦ ଆସିଲେ ମଧ୍ୟ ତାହା ଶୋଚନା କରିବା ବୀରର ଉଚିତ ନୁହେଁ । କାରଣ ତହିଁରେ ଦେଶର ମଙ୍ଗଳ ହେବ ଏବଂ ଦେଶର ମଙ୍ଗଳ ହେଲେ ଆମ୍ଭମାନଙ୍କର ମଧ୍ୟ ମଙ୍ଗଳ ହେବ । ସରକାରଙ୍କର ନିଜର ହୋଇ କଅଣ ଅଛି ? ସେ ଯାହା କରୁଛନ୍ତି, ତାହା କେବଳ ଦେଶରକ୍ଷା ପାଇଁ । ଦେଶରକ୍ଷା ହେଲେ ଆମ୍ଭମାନଙ୍କର ଓ ଆମ୍ଭ ପରିବାରଙ୍କର ବିଶେଷତଃ ଆମ୍ଭ ସର୍ବଂଶର ବହୁତ ମଙ୍ଗଳ ହେବ । ତେଣୁ ଆସ, ସମସ୍ତେ ସାହାସ ବାନ୍ଧି ପୁଣି ଜମ୍ମୁ ବିରୁଦ୍ଧରେ ଯାତ୍ରାକରିବା । ସେହି ସଇତାନ ଜାନୁଆରକୁ ବାନ୍ଧି ହେଉ ବା ମାରି ହେଉ ଯେକୌଣସି ମତେ ସରକାରଙ୍କଠାରେ ଆଣି ଦାଖଲ କରିବା । ଏଥିପାଇଁ ଯାହା ଖର୍ଚ୍ଚ ହେବ ଏବଂ ଯେଉଁ ସାହାଯ୍ୟ ଆବଶ୍ୟକ ହେବ, ତାହା ସବୁ ସରକାର ଦେବାକୁ ପ୍ରସ୍ତୁତ ଅଛନ୍ତି ।"

ମାଷ୍ଟର ନିଜେ ଏଥିରେ ଏତେ ଉତ୍ସାହୀ ଥିବାର ଦେଖି ତାଙ୍କ ପ୍ରିୟ ସେବକମାନେ ଶେଷରେ ଜମ୍ମୁ ବିରୁଦ୍ଧରେ ରଣଯାତ୍ରା କରିବାକୁ ସ୍ୱୀକୃତ ହେଲେ । ତା ପରେ ବିଚାର ହେଲା—"ଆମ୍ଭେମାନେ ବଣକୁ ଯିବାର ସୂଚନା ଜମ୍ମୁ ପାଇଲେ ସେ ଅନ୍ଧକାରରେ କାର୍ଯ୍ୟ କରିବାକୁ ଧାଇଁବ; ଆଉ ହିତାହିତ ବିବେଚନା କରିବ ନାହିଁ । ହୁଏତ ସେ କ୍ରୋଧରେ ଧାଇଁ ଆସି ଆମ୍ଭମାନଙ୍କ ଉପରେ ଭୀଷଣ ଅତ୍ୟାଚାର ଆରମ୍ଭକରିଦେବ ଏବଂ ସମସ୍ତ ବାଘ ସିଂହଙ୍କୁ ଆମ୍ଭ ଉପରେ ଆଣି ଅଜାଡି ଦେବ । ତା ନ ହେଲେ

ସେ ଅମ୍ବ ସୀମାଭିତରୁ ଏପରି ପ୍ରାନ୍ତରେ ଲୁଚିଯାଇ ଖସିଯିବ ଯେ ତାର ବାସନା ସୁଦ୍ଧା ଅମ୍ଭେମାନେ ପାଇବା ନାହିଁ। ଅତଏବ ବଣରେ ବୁଲି ବୁଲି ମେଲେରିଆ ଜ୍ୱର ଭୋଗି ଭୋଗି ଫେରିବା। ଏଥିରେ କୌଣସି ଉପକାର ହେବାର ଆଶା ଦେଖା ଯାଉନାହିଁ।"

"ତେବେ କଅଣ କଲେ ଭଲ ହେବ"—ଏହି କଥା ସମସ୍ତେ ସାତଦିନ ପର୍ଯ୍ୟନ୍ତ ଭାବିଲେ। ଶେଷରେ ସମସ୍ତେ ଏକମତ ହୋଇ ଠିକ୍ କଲେ ଯେ "ଜମ୍ବୁ ଚମ୍ପାର ଏକମାତ୍ର ବଶୀଭୂତ। ଚମ୍ପାକୁ ଦେଖିଲେ ସେ ଲକ୍ଷ୍ମୀପରି କୋମଳ ହୋଇଯିବ। ଚମ୍ପା ତାକୁ ଯାହା କରିବାକୁ କହିବ ସେ ନିଶ୍ଚୟ ତାହା କରିବ। ଚମ୍ପା ତାକୁ ଆଣି କୌଣସିମତେ ପିଞ୍ଜରାରେ ପୂରାଇଦେଲେ ଆମ୍ଭ ଉଦ୍ଦେଶ୍ୟ ସିଦ୍ଧ ହେବ।" ଏହା ଠିକ୍ ହେବାରୁ ମାଷ୍ଟର ଟେଲିଗ୍ରାଫ୍ କରି ଚମ୍ପାକୁ ବମ୍ବେରୁ ଡକାଇଲେ। ଚମ୍ପା ଦୁଇଦିନ ପରେ ଆସି ନାଗପୁରରେ ପହଞ୍ଚିଲା। ସେ ଆସିଲା ପରେ ଯାତ୍ରାର ସମସ୍ତ ଆୟୋଜନ ଖୁବ୍ ଜୋରରେ ଚାଲିଲା। ସେମାନେ ବହୁତ ଶିକାରୀ ପୋଲିସ୍ ସମସ୍ତଙ୍କର ଏକମାସର ଖାଦ୍ୟ ଓ ଅନ୍ୟାନ୍ୟ ଚଳାଚଳ ଦ୍ରବ୍ୟ ସାଙ୍ଗରେ ଧରି ଯାତ୍ରା କଲେ।

———

ସଫଳତା

## —କୋଡ଼ିଏ—

ଅଗଷ୍ଟ ରାସ୍ତା ବାଟ ସବୁ ସେମାନଙ୍କୁ ମାଲୁମ ଥିଲା । ଖୁବ୍ ଜମଦନମଧ୍ୟରେ ସେମାନେ ଜମି ଧରିନେଇଥିବା ପାଟଣାକଟରେ ପହଞ୍ଚି ସାଙ୍ଗମାନଙ୍କ ମଧ୍ୟରେ ଡେରା ପକାଇଲେ । ଅନେକ ତମ୍ବୁ ପଡ଼ିଲା, ତହିଁରେ ବଡ଼ ବଡ଼ କର୍ମଚାରୀମାନେ ରହିଲେ । ଅନେକ ମଜଭୁତ କାଠଘର ତିଆରି ହେଲା, ତହିଁରେ କୁଲିମାନେ ଓ ଛୋଟ ଚାକରମାନେ ରହିଲେ । ଡେରାର ମଧ୍ୟଭାଗରେ ଗୋଟାଏ ସ୍ଵତନ୍ତ୍ର ତମ୍ବୁରେ ମାଷ୍ଟର ଓ ତାଙ୍କ ଝିଅ ଚମ୍ପକସୁନ୍ଦରୀ ରହିଲେ । ଡେରା ଚାରିପଟେ ଖୁବ୍ ବଡ଼ ବଡ଼ କାଠଗଡ଼ମାନ ପୋତାହୋଇ ଗୋଟାଏ ବେଢ଼ା ପାଚେରୀ ତିଆରି ହେଲା । ପାଚେରୀ ବାହାରପଟେ କୋଡ଼ିଏ ଫୁଟ ଓସାର ଓ ଦଶଫୁଟ ଗଭୀରର ଗୋଟାଏ ଗଣା ସମୁଦାୟ ଡେରା ବେଢ଼ାନ୍ତରେ ଖୋଳାହେଲା । ଏଥର ଡେରା ଏତେ ମଜଭୁତ ହେଲା ଯେ ତା ଭିତରକୁ କୌଣସି ଜନ୍ତୁ ଅସିବା ଅସମ୍ଭବ ।

ଡେରା କାମ ଶେଷ ହେବାକୁ ସପ୍ତାହେ ଲାଗିଗଲା । ସମସ୍ତେ ଡେରାବସ୍ଥରେ ନିର୍ଭୟହୋଇସାରିଲାପରେ ସବୁ ଶିକାରୀଙ୍କୁ ଦୁଇଭାଗରେ ବିଭକ୍ତ କରାଗଲା । ଭାଗେ ଖୁବ୍ ସାବଧାନ ହୋଇ ଡେରାକୁ ପହରା ଦେଲେ ଏବଂ ଅବଶିଷ୍ଟ ଗୋଟାଏ ଗୋଟାଏ ଦଳବାନ୍ଧି ଜନ୍ତୁଙ୍କୁ ଖୋଜିବା ପାଇଁ ସବୁଦିଗକୁ ପଠାହେଲେ ।

ସେମାନେ ନିଜ ନିଜ ଅଞ୍ଚଳ ଭିତରେ ବୁଲି ବୁଲିଅଯୁଦନ ସନ୍ଧ୍ୟାକୁ ଫେରିଆସିବେ ଏବଂ ଯାହା ଯାହା ଦେଖିଲେ, ତାହା ଜଣାଇବେ ବୋଲି ହୁକୁମପାଇଲେ । ସବୁଦଳ ଗୃହଅଡ଼କୁ ଯାଇ ବହୁତ ଅନୁସନ୍ଧାନ କଲେ ଏବଂ ବହୁତ ଅପଦ ବିପଦ ମଧ୍ୟରେ ପଡ଼ି ସେଥିରୁ କେତେଜଣ ଜୀବନ ହରାଇଲେ ।

ଯେଉଁ ଦଳ ଦକ୍ଷିଣକୁ ଯାଇଥିଲେ ସେମାନେ ପ୍ରଥମ ଦିନ ନିସ୍ପଦରେ ଦଶ ମାଇଲ ବଣ ପଙ୍କୀ ପଙ୍କୀ ଅନୁସନ୍ଧାନକଲେ । ସନ୍ଧ୍ୟା ହେଲାରୁ ଗୋଟାଏ ଗଛରେ ଚଢ଼ି ରାତି କଟାଇଲେ । ତହୁଁ ଥରଦିନ ବଣରେ ଏଣେ ତେଣେ ଘୂରିଲା ବେଳେ ଦୁଇଟା ମହାବଳ ବାଘ ଲଟାଗୁହାଡ଼ରୁ ଡେଇଁପଡ଼ି ସେମାନଙ୍କ ଭିତରୁ ଜଣକୁ ମାରି ନେଇଗଲେ । ଅନ୍ୟ ବାଣୁଆମାନେ ପଛେ ପଛେ ଗଲେ ତାର କିଛି ଚିହ୍ନ ପାଇଲେନାହିଁ । ବହୁତ ଦୂରରେ ମଣିଷର ଚିତ୍କାର ଶୁଣାଗଲା । ଏମାନେ ସେହି ଶବ୍ଦକୁ ଲକ୍ଷ୍ୟକରି ପୁଣି ଧାଇଁଲେ ଏବଂ ଅନେକ ଦୂର ପର୍ଯ୍ୟନ୍ତ ଖୋଜିଲେ । ମାତ୍ର ସେମାନଙ୍କର କୌଣସି ସଙ୍କେତ ପାଇଲେ ନାହିଁ । ଖୁଜୁଁ ଖୁଜୁଁ ରାତି ହୋଇଗଲା । ସେମାନେ ଗୋଟାଏ ପାହାଡ଼ ଖୋଳରେ ସେ ରାତି ବିଶ୍ରାମ ନେଲେ । ରାତି ବାରଟାବେଳକୁ ଏମାନଙ୍କୁ ଗାଢ଼ ନିଦ୍ରା ହୋଇ ଯାଇଥିଲା । ହଠାତ୍ ମଣିଷର ଚିତ୍କାର ଶୁଣି ସମସ୍ତେ ଉଠି ଦେଖିଲେ ଯେ ଗୋଟାଏ ଭୀଷଣ ଅଜଗର ସାପ ସେମାନଙ୍କ ଭିତରୁ ଜଣକୁ ମୁଣ୍ଡଅଡ଼ୁ ଗିଳି ନେଉଥିଲା, ତାର ଗୋଡ଼ ଦୁଇଟା କେବଳ ବାକିଥିଲା । ଆଉ ଗୋଟାଏ ସାପ ସେହି ପାହାଡ଼ ଖୋଲରୁ ବାହାରି ଆଉ ଜଣକୁ ଗୋଡ଼ଅଡ଼ୁ ଅଧାଯାଏ ଗିଳିଥିବା ବେଳେ ସେ

ଭୟଙ୍କର ଚିତ୍କାର କରୁଥିଲା । ଏମାନେ ବନରେ ଯେଉଁ ବିପଦ ଭୋଗିଥିଲେ, ତହିଁରେ କାତର ହୋଇ ପଡ଼ୁଥିଲେ । ସ୍ୱତର ବିପଦ ତାଠାରୁ ବଳପଡ଼ିଲା । ତେଣୁ ଭୟରେ ଅସ୍ଥିର ହୋଇ ଏମାନେ ସେ ସାପ ଦୁଇଟାକୁ ଗୁଳିକଲେ । ସାପ ଦୁଇଟା ମଲାପରେ ତାଙ୍କ ପେଟ ଚିରିବାରୁ ଦେଖାଗଲା, ପ୍ରଥମ ଛେଳିଟା ଏକବାରେ ପେଷି ହୋଇ ଯାଇଛି ଏବଂ ଅନ୍ୟ ଛେଳିଟାର ଅଣ୍ଟା ପର୍ଯ୍ୟନ୍ତ ଅଉ ଜୀର୍ଣ୍ଣ ନାହିଁ । ସେ ମଧ୍ୟ ସାଙ୍ଗେ ସାଙ୍ଗେ ମରିଗଲା । ଏମାନେ ଗୋଟାଏ ବଡ଼ ନିଆଁ ଜାଳି ତା ଚାରିପାଖେ ବସିରହିଲେ ଏବଂ କଥାବାର୍ତ୍ତାକରି ରାତି କଟାଇଲେ । ସକାଳ ହେଲାରୁ ଏମାନେ ଅଉ ଜମ୍ମୁର ଅନୁସନ୍ଧାନ ନ କରି ଡେବ୍ରିଥଡ଼କୁ ଫେରିଗଲେ ଏବଂ ସନ୍ଧ୍ୟାରେ ସେଠାରେ ପହଞ୍ଚି ସେମାନଙ୍କ ବିପଦବାର୍ତ୍ତା ମାଷ୍ଟରଙ୍କୁ ଜଣାଇଲେ । ମାଷ୍ଟର ଲୁହଜଣଙ୍କ ମୃତ୍ୟୁରେ ବିଶେଷ ଦୁଃଖିତ ହୋଇ ସେମାନଙ୍କୁ ଆଲିଙ୍ଗନ କଲେ ଏବଂ ଭବିଷ୍ୟ କର୍ମକର ବିପଦରେ ପଡ଼ିଥିବାରୁ ସେମାନଙ୍କୁ ବହୁତ ଆଶ୍ୱାସନା ଦେଲେ ।

---

## —ଏକୋଇଶୀ—

ଯେଉଁମାନେ ପୂର୍ବ ଦିଗକୁ ଯାଇଥିଲେ, ସେମାନେ ପ୍ରଥମ ଦିନ ଅନେକ ଅନୁସନ୍ଧାନ କଲେ ଏବ ସମତଳଭୂମି ଓ ଠିଆବଣ ଖୋଜିବାରୁ ସେଦିନ ପନ୍ଦର ମାଇଲ ପର୍ଯ୍ୟନ୍ତ ଚାଲିଗଲେ । ଦିନ ଥାଉ ଥାଉ ଗୋଟାଏ ବଡ଼ଗଛ ଠିକ୍ କରି ତା ଉପରେ ରାତି କଟାଇଲେ । ତା ପରଦିନ ସକାଳୁ ଯାଇ ଦିପହର ବେଳକୁ ଗୋଟାଏ ବଡ଼ ଗହ୍ୱରିଆ ନଈ ଦେଖିବାକୁ ପାଇଲେ । ସେମାନେ ସେ ନଈରେ ପହଁରି ଯାଉଥିବା ବେଳେ ହଠାତ୍ ଗୋଟାଏ କୁମ୍ଭୀର କୁଆଡ଼ୁ ଝପି ଆସିଲା ଏବ ଲାଞ୍ଜରେ ଜଣକୁ ଗୁଡ଼ାଇ ଆଉ ଜଣକୁ ଥଣ୍ଟରେ କାମୁଡ଼ି ପାଣିରେ କୁଆଡ଼େ ଅଦୃଶ୍ୟ ହୋଇଗଲା । ଏମାନେ ଅରକୂଳକୁ ଯାଇ ଏ ବିପଦରେ ବଡ଼ କାତର ହୋଇ ପଡ଼ିଲେ ଏବଂ ଅନେକଦୂର ପର୍ଯ୍ୟନ୍ତ କୁମ୍ଭୀରଟାକୁ ବହୁତ ଖୋଜିଲେ । ମାତ୍ର ସେ ଆଉ ଦେଖାଗଲା ନାହିଁ । ଏମାନେ ମନସ୍ତାପରେ ସେଠାରୁ ସନ୍ଧ୍ୟା-ପର୍ଯ୍ୟନ୍ତ ହମ୍ଭର ଅନୁସନ୍ଧାନରେ ଲାଗିଲେ । ସନ୍ଧ୍ୟାରେ ଗୋଟିଏ ଜାଗାରେ ବିଶ୍ରାମ ନେବାକୁ ଠିକ୍ କରି ସେଠାରେ ରହିଲେ ।

ରାତି ଅଧବେଳକୁ ଦଳେ ହାତୀ ଗଛଡାଳମାନ ଭାଙ୍ଗି ଭୟଙ୍କର ଚିତ୍କାର କରି ଆସିଲେ । ସେ ରଡ଼ିସାଡ଼ରେ ଏମାନେ ହଠାତ୍ ଉଠି ପଡ଼ିଲେ ଏବଂ ଅନ୍ଧାରରେ ସାବଧାନ ହୋଇ ରହିବାକୁ ବହୁତ ଯତ୍ନ କଲେ । ହାତୀମାନେ କ୍ରମଶଃ ଖୁବ୍ ନିକଟକୁ

ମାଡ଼ି ଆସିଲେ । ସେମାନେ କେଉଁ ବାଟ ଦେଇ କୁଆଡ଼େ ଗଲେ ଶିକାରୀମାନେ ତାହା ଠିକ୍ କରି ନ ପାରି ଭେଟେବଲା ହୋଇ ପଡ଼ିଲେ ଏବଂ ଏକସମୟରେ ସମସ୍ତେ ବନ୍ଧୁକ ଛୁଟିଲେ । ଶିକାରୀଙ୍କ ଭେଟେବଲାଠାରୁ ହାତୀଙ୍କ ଭେଟେବଲା ବଳିପଡ଼ିଲା । ସେମାନେ ବନ୍ଧୁକ ଶବ୍ଦଘାତରେ ପାଗଳପରିହୋଇ ପ୍ରାଣଭୟରେ ଏଣେ ତେଣେ ଧାଇଁଲେ । ଶିକାରୀମାନେ ଯେଉଁଠାରେ ବହୁ ବନ୍ଧୁକ ଲୁଚି ଥିଲେ, ଶତାଧିକ ହାତୀ ସେଆଡ଼କୁ ଭୀଷଣ ଭାବରେ ଧାଇଁ ଆସିଲେ । ସେମାନଙ୍କ ଉପରେ ଅଜସ୍ର ଅଜସ୍ର ବନ୍ଧୁକ ମାଡ଼ ହେବାରୁ ସେମାନେ ଅଧୀର ଅଜ୍ଞାନ ହୋଇ ଏଣେ ତେଣେ ଧାଇଁଲେ । ଘୋର ଅନ୍ଧାର ରାତି; ଶିକାରୀମାନଙ୍କୁ କିଛି ଦିଶୁନାହିଁ କି ହାତୀ-ମାନଙ୍କୁ ମଧ୍ୟ କିଛି ଦିଶୁନାହିଁ । ହାତୀମାନେ ହଠାତ୍ ଧାଇଁ ଶିକାରୀମାନଙ୍କ ଉପର ଦେଇ ପଳାଇଗଲେ । ସେମାନଙ୍କ ପାଦରେ ଓ ଶୁଣ୍ଢ ଆଘାତରେ ଅନେକ ଶିକାରୀ ଦଳିହୋଇଗଲେ । ଯେ ଯୁଆଡ଼େ ପାରିଲେ ଦୌଡ଼ିଯାଇ ଲଟାବୁଦାରେ କିମ୍ବା ପଥର ଖୋଲରେ ଲୁଚିଗଲେ । ହାତୀମାନେ ଯେ ଯୁଆଡ଼େ ପଳେଇଗଲେ । ସକାଳେ ଦେଖିଲେ ବେଳକୁ ସେମାନଙ୍କ ଭିତରୁ ଦଶଜଣ ହାତୀ ପାଦତଳେ ଦଳିହୋଇ ଯାଇଥିଲେ ଏବଂ ଆଉ ପାଞ୍ଚଜଣ ମାତ୍ର ଅବଶିଷ୍ଟ ଥିଲେ । ସେହି ଜାଗାରେ ପାଞ୍ଚଟା ହାତୀ ମରି ପଡ଼ିଥିବାର ଦେଖାଗଲା । ଏ ପାଞ୍ଚଜଣ ଭୟରେ କାତର ହୋଇପଡ଼ିଲେ ଏବଂ ଜୀବନର ସମସ୍ତ ଆଶା ଛାଡ଼ିଦେଇ ଘରଆଡ଼କୁ ଚାଲିଲେ । ବାଟରେ ସେହି ନଈ ପଡ଼ିଲା । ନଈରେ ପହଁରି ଯାଉ ଯାଉ ଗୋଟାଏ କୁମ୍ଭୀର ବୁଡ଼ ବୁଡ଼ ଆସି ଜଣକୁ ଧରି ପାଣିରେ ବୁଡ଼ାଇଲା । ବାକି ଚାରିଜଣ

ଅବ କୂଳରେ ହେଥିଁ ବହୁତ ବ୍ୟାକୁଳ ହେଲେ ଏବଂ ଜୀବନର ଶେଷ ଅଶାଟିକ ଜ୍ଞାଣ୍ଡଦେଇ ଦୀର୍ଘ ପଥ ଅତକ୍ରମ କରିବାରେ ଲାଗିଲେ । ସୌଭାଗ୍ୟକୁ ସେମାନେ ଅଳ୍ପ କୌଣସି ବିପଦ ବାଟରେ ନ ଭୋଗି ସନ୍ଧ୍ୟାରେ ତେଜ୍ପରେ ପହଞ୍ଚିଲେ ଏବଂ ମାଷ୍ଟରଙ୍କୁ ସବୁ ହାଲ ଜଣାଇଲେ । ମାଷ୍ଟର ଶୋକାକୁଳ ମନରେ ସେମାନଙ୍କୁ ବହୁତ ଅଶ୍ୱାସନା ଦେଲେ ଏବଂ ସେମାନେ ବିପଦରୁ ବର୍ତ୍ତି ଅସି-ଥିବାରୁ ଭଗବାନଙ୍କୁ ବହୁତ ପ୍ରାର୍ଥନା କଲେ ।

---

## —ଡାଇଣୀ—

ମାଷ୍ଟର ସଦଳ ବଳରେ ପଶ୍ଚିମ ଦିଗରୁ ଆସି ବଣରେ ପଶିଥିବାରୁ ସେ ଅଞ୍ଚଳଟା ସେମାନେ ଦେଖି ନେଇଥିଲେ । ଅନ୍ୟ ସେପଟକୁ କୌଣସି ଛ ଜାଗା ଯାଇ ନ ଥିଲେ । ଉତ୍ତର ଦିଗକୁ ଯେଉଁମାନେ ଯାଇଥିଲେ ସେମାନେ ବଣର ଅନେକ ଅଞ୍ଚଳ ଘୂରି ବହୁତ ଛୋଟ ଛୋଟ ଜୀବଜନ୍ତୁ ଦେଖିଲେ । ବଡ଼ ବଡ଼ ଜନ୍ତୁ ସନ୍ଧ୍ୟା-ପର୍ଯ୍ୟନ୍ତ ସେମାନଙ୍କ ଦୃଷ୍ଟିରେ ପଡ଼ିଲେନାହିଁ । ସନ୍ଧ୍ୟା ହେବାରୁ ଏମାନେ ଖିଅପିଅ ସାରି ଗଛମାନଙ୍କରେ ଯାଇ ଚଢ଼ିଲେ ଏବଂ ସେଠାରେ ଲୁଚି ରହିଲେ । ରାତି ନଅଟା ବେଳକୁ ଗୋଟାଏ ଘୁ ଘୁ ଢେ ବହୁତ ଦୂରରୁ ଶୁଣାଗଲା । ଏମାନେ ସେ ଦିଗକୁ କାନେଇ ରହିଲେ । ସେ ଶବ୍ଦ କ୍ରମେ କ୍ରମେ ପାଖ ହୋଇ ଆସିଲା । ଅନ୍ଧାର ରାତିରେ କିଛି ଦେଖାଗଲା ନାହିଁ । ସେ ଢେ ପାଖ ହେବାରୁ ଜଣାଗଲା ଯେ ହଜାରେ ପର୍ଯ୍ୟନ୍ତ ବାଘ ଭାଲୁ ହାତୀ ଏକ ସଙ୍ଗେ ସେ ଅଡ଼କୁ ମାଡ଼ିଆସୁଛନ୍ତି । ଏମାନେ ସେଅଡ଼କୁ ଆଲୁଅ ପକାଇ ଦେଖିଲେ, ହାତୀମାନେ ମଝିରେ ଓ ବାଘ ଭାଲୁ ଦୁଇ କଡରେ ଦକ୍ଷିଣ ଅଡ଼କୁ ମାଡ଼ି ଚାଲୁଛନ୍ତି । ପୁଣି ନିରୀକ୍ଷଣ କରି ଦେଖିଲେ, ଗୋଟାଏ ବୃହତ୍ ଦନ୍ତାହାତୀ ପିଠିରେ ଜମ୍ବୁ ବସିଛି ଏବଂ ତାଳିତାଳି ବଡ଼ ମଜା ଅନୁଭବ କରି ଚାଲିଛି । ଜମ୍ବୁ ନାଗପୁର ସର୍କସରେ ଯେଉଁ କେତେ ଦିନ ଥିଲା, ସେ ସମୟରେ ଦେଖି ନେଇଥିଲା ଯେ ମଣିଷମାନେ ହାତୀ ପିଠିରେ ବସି ଯିବା ଆସିବା କରୁଛନ୍ତି । ଏଥିରୁ

ସେ ବୋଧହୁଏ ଗୋଟାଏ ଧାରଣା କରିନେଇଥିଲା ଯେ ହାତୀ ପିଠିରେ ବସିଲେ ବଡ଼ ମଜା ହୁଏ । ତେଣୁ ସେ ହାତୀ ପିଠିରେ ବସି ବଣଭିତରେ ବୁଲୁଥିଲା । ଏମାନେ ଏହା ଦେଖି ବଡ଼ ଅଶ୍ଚର୍ଯ୍ୟ ହୋଇଗଲେ ; ମାତ୍ର କୌଣସି ଶବ୍ଦ ନ କରି କେବଳ ଅବସ୍ଥା ଲକ୍ଷ୍ୟ କରିବାରେ ଲାଗିଲେ । ଯେଉଁ ଅଲ୍‌ଅ ଏମାନେ ଜନ୍ତୁମାନଙ୍କ ଉପରେ ପକାଇଲେ, ତହିଁରେ ସେମାନେ କୌଣସିମତେ ବିଚଳିତ ହେଲେ ନାହିଁ କିମ୍ବା କିଛି ବୁଝିପାରିଲେ ନାହିଁ ; ମାତ୍ର ଜମ୍ବୁ ତାହା ଦେଖି ଚମକି ପଡ଼ିଲା । ସେ ଗୋଟାଏ କୁଦାମାରି ହାତୀ ପିଠିରୁ ତଳକୁ ଡେଇଁ ପଡ଼ିଲା ଏବଂ ଅନ୍ଧାରେ ଅନ୍ଧାରେ କୁଆଡ଼େ ଅଦୃଶ୍ୟ ହୋଇଗଲା । ସମସ୍ତ ଜନ୍ତୁ ଘଣ୍ଟାଏ ଖଣ୍ଡେ ବନ୍ଦ ହୋଇଗଲେ ; ତା ପରେ ଯେମିତି ବୁଲୁଥିଲେ ସେମିତି ବୁଲିବାରେ ଲାଗିଲେ । ଏମାନେ ସ୍ପଷ୍ଟଭାବ ଚେତାବନ୍ଧ୍ର ବିଭବର ଅବସ୍ଥା ଲକ୍ଷ୍ୟକଲେ । ଜନ୍ତୁମାନେ ବହୁ ଦୂରକୁ ବୁଲି ଯିବାପରେ ଅଉ ସେମାନଙ୍କର କୌଣସି ଶବ୍ଦ ଶୁଣାଗଲା ନାହିଁ । ଜମ୍ବୁ ଏମାନଙ୍କ ସାଙ୍ଗରେ ଗଲା କି ନା ଶିକାରୀମାନେ ବୁଝି ପାରିଲେ ନାହିଁ ।

ଭୋରବେଳେ ଏମାନେ ଗଛରୁ ଓହ୍ଲାଇ ଜନ୍ତୁମାନଙ୍କ ପନ୍ଥା ଅନୁସରଣ କରି ବୁଲିଲେ । ଦିନ ଦଶଟା ବେଳେ ସେମାନେ ପାହାଡ଼ କୂଳରେ ପହଞ୍ଚି ଦେଖିଲେ, ଜନ୍ତୁମାନେ ପାହାଡ଼ର ପୂର୍ବ ଭାଗରେ ଥିବା ପାହାଡ଼ରେ ରହି ଖେଳବୁଲ କରୁଛନ୍ତି । ଏମାନେ ନିଃଶବ୍ଦରେ ସେଠାରେ ଛପି ରହି ଜମ୍ବୁ ଅଛି କି ନା ତାହା ଦେଖି ବାକୁ ଚେଷ୍ଟା କଲେ । ଦିନ ସୁବିଧା ବେଳକୁ ସେମାନେ ଗୋଟାଏ ଦୃଶ୍ୟ ଦେଖି ଏକାନ୍ତ ମୁଗ୍ଧ ହୋଇଗଲେ । ସେତେବେଳେ

ସବୁ ଜନ୍ତୁ ବଣରୁ ପାଣି ଅଡ଼କୁ ଆସୁଥିଲେ । ହାତୀମାନେ ମଝିରେ ଓ ବାଘ ଭାଲୁ ଦୂର କଡ଼ରେ ଥିଲେ । ଗୋଟାଏ ବଡ଼ ଦନ୍ତା ପିଠିରେ ଜମ୍ବୁ ବସିଥିଲା ଏବଂ ଗୋଟାଏ ବଡ଼ ମାଙ୍କଡ଼କୁ କୋଳରେ ବସାଇ କଣ ଗୋଟାଏ କଥା ଗେଲ କରୁଥିଲା । ଅଳ୍ପ ଦୂରରେ ସେମାନେ ଦେଖିଲେ ଏମାନେ ଶୁଣିଲେ, ଜମ୍ବୁ ମାଙ୍କଡ଼କୁ ସାମ୍ପା ସାମ୍ପା ବୋଲି କଥା ଗେଲ କରୁଛି ଏବଂ ଆନନ୍ଦରେ ବୁଝିଗଲା ପରି ବୋଧ ହେଉଛି । ଏ ଦୃଶ୍ୟ ଦେଖି ଏମାନଙ୍କ ମନ ଆନନ୍ଦରେ ଭାସିଗଲା । ମାଷ୍ଟରଙ୍କ ଉଦ୍ଦେଶ୍ୟ ଅଚିରେ ସଫଳ ହେବ ବୋଲି ଏମାନେ ଆଶାକଲେ ।

ଜମ୍ବୁ ସଦଳ ବଳେ ପାଣିକୂଳରେ ପହଞ୍ଚି ମାଙ୍କଡ଼ ସହ ହାତୀ ଉପରୁ ତଳକୁ ଡେଇଁ ପଡ଼ିଲା ଏବଂ ପାଣିରେ ପହଁରି ଖେଳ କୌତୁକ କଲା । ହାତୀମାନେ ମଧ୍ୟ ପାଣିରେ ପଶି ପହଁରିଲେ ଓ ଖେଳିଲେ । ଜମ୍ବୁ ପହଁରୁ ପହଁରୁ ସେମାନଙ୍କ ପିଠିରେ ଚଢ଼ି ଯାଉଥାଏ ଏବଂ ଲୁଦାମାରି ପାଣିକୁ ଡେଇଁ ପଡୁଥାଏ । କେତେବେଳେ ସେମାନଙ୍କ ସଙ୍ଗେ ପାଣିରେ ଗୋଡ଼ା ଗୋଡ଼େଇ କରୁଥାଏ ; ପୁଣି କେତେ ବେଳେ ବୁଡ଼ପାଇ ଅନେକ ବାଟରେ ବାହାରି ହାତୀମାନଙ୍କୁ ହେଲେଙ୍କା କରିଦେଉଥାଏ । ଏଥିରେ ହାତୀମାନଙ୍କର ଯେପରି ଆନନ୍ଦ, ଜମ୍ବୁର ମଧ୍ୟ ସେହିପରି ଆନନ୍ଦ । ବାଘ ଓ ଭାଲୁମାନେ ପାଣିରେ ନ ପଶି କୂଳରେ ଉଠି ଡେଇଁ ଦୌଡ଼ା ଦୌଡ଼ି କରୁଥାନ୍ତି ଏବଂ ସେଥିରେ ସେମାନଙ୍କର ଆମୋଦ ପ୍ରମୋଦ ଚାଲିଥାଏ । ଏପରି ଭାବରେ ଦୁଇ ଘଣ୍ଟା ଖେଳହେବାପରେ ଜମ୍ବୁ ମାଙ୍କଡ଼କୁ ଧରି ହଠାତ୍ କୂଳକୁ ଚାଲିଆସିଲା । ଆଉ କାହାରିକୁ ଅପେକ୍ଷା ନ କରି ସେ ପର୍ବତ ଅଡ଼କୁ ଦୌଡ଼ି ପଳାଇଲା ଏବଂ ଘୋର ବଣ

ଭିତରେ ଅଦୃଶ୍ୟ ହୋଇଗଲା । ଅନ୍ୟ ଜନ୍ତୁମାନେ ତା ପଛେ ପଛେ ଦୌଡ଼ିଗଲେ ଏବଂ ସେହି ପରି ବଣ ଭିତରେ ଅଦୃଶ୍ୟ ହୋଇଗଲେ ।

ଜମ୍ବୁ ଜନ୍ତୁମାନଙ୍କ ସହ ସେ ପର୍ବତରେ ରହୁଥିବାର ଏମାନେ ଅନୁମାନ କରି ପାଖ କୂଳରେ ରାତ୍ରୀ ଯାପନ କଲେ ଏବଂ ତହିଁଆର ଦିନ ସକାଳେ ଏହାର ତଥ୍ୟ ବୁଝିବା ପାଇଁ ସେହି ଘୋର ବିପଦ ପୂର୍ଣ୍ଣ ପାହାଡ଼ ଅଡ଼କୁ ଛପି ଛପି ଗଲେ । ସେ ପର୍ବତ ଖୁବ ବଡ଼ ଓ ବହୁଦୂରପର୍ଯ୍ୟନ୍ତ ବିସ୍ତୃତ । ତହିଁରେ ଖୁବ୍ ବଡ଼ ବଡ଼ ଗଛଠାରୁ ଛୋଟ ବୁଦା ପର୍ଯ୍ୟନ୍ତ ଅତି ଘଞ୍ଚ ଭାବରେ ବଢ଼ିଥିଲା । ସେ ପାହାଡ଼ରୁ ଅନେକ ବଡ଼ ବଡ଼ ନାଳ ଅସି ପାଖରେ ପଡ଼ୁଥିଲା । ଏମାନେ ସେ ପାହାଡ଼ ଅଡ଼କୁ ଦଳ ଦଳ ହୋଇ ଗଲେ ଏବଂ ଗୋଟାଏ ଜାଗାରେ ଜମ୍ବୁ ସବୁଜନ୍ତୁଙ୍କ ମେଳରେ ଥାଇ ଖେଳ କରୁଥିବା ର ଦେଖିଲେ । ଏହି ପାହାଡ଼ ଯେ ଜମ୍ବୁର ଅସ୍ଥାନ, ଏ ବିଷୟରେ କାହାର ସନ୍ଦେହ ରହିଲାନାହିଁ । ଏପରି ସ୍ଥିରନିଶ୍ଚୟ କରି ଏମାନେ ଡେରାକୁ ଫେରିଗଲେ ଏବଂ ସନ୍ଧ୍ୟା ସମୟରେ ସେଠାରେ ଦେହଞ୍ଚି ମାଷ୍ଟରଙ୍କୁ ସମସ୍ତ ଖବର ଜଣାଇଲେ । ଏମାନେ କୃତକାର୍ଯ୍ୟ ହୋଇ ନିରାପଦରେ ଫେରିଅସିଥିବାରୁ ମାଷ୍ଟରଙ୍କର ଅନନ୍ଦର ସୀମା ରହିଲନାହିଁ । ସେ ବିଜୟ ଅନନ୍ଦରେ ଜନ୍ମତ୍ତ ହୋଇ ସେମାନଙ୍କୁ ବହେ ଅଲିଙ୍ଗନ କଲେ ଏବଂ ପ୍ରତ୍ୟେକଙ୍କୁ ଶହେ ଟଙ୍କା ଲେଖାଏଁ ବକ୍‌ସିସ୍ ଦେଲେ ।

---

## —ଚେଉଣୀ—

ତହୁଁ ଅରଣ୍ୟର ସମସ୍ତେ ଏକାଠି ବସି କଅଣ କରିବେ ବୋଲି ବିଚାର କଲେ । ଶିକାରୀମାନେ କହିଲେ, "ଜମ୍ବୁ ଚମ୍ପକ-ସୁନ୍ଦରୀକୁ ଭୁଲି ନାହିଁ । ଏଥର ସେ ଅନେକ ପରିମାଣରେ ବଦଳି ଯାଇଛି । ସେ ହାତୀ ପିଠିରେ ଚଢ଼ି ରାଜାପରି ବୁଲୁଛି ଏବଂ ଘୋଡ଼ାମାନଙ୍କୁ ପାଖରେ ବସାଇ ତାକୁ ସମ୍ପା ସମ୍ପା ବୋଲି ଡାକି ବରାବର ଖେଳ କରୁଛି । ସେ ସହରରେ ରହି କେତେକ କଥା ଜାଣିଯାଇଛି ଏବଂ ମଣିଷମାନଙ୍କୁ ଅନୁକରଣ କରି କେତେକ କାମ କରୁଥିବାର ଦେଖା ଯାଉଛି ।" ଏହାଶୁଣି ସମସ୍ତେ ପରସ୍ପର ମୁହଁକୁ ଚାହିଁଲେ ଏବଂ କଅଣ କରିବେ ବୋଲି ଅନେକ ବିଚାର କଲେ । ବହୁତ ସ୍ଥିର ତର୍କପରେ ଠିକ୍ ହେଲା—ଚମ୍ପା ଜମ୍ବୁ ପାଖକୁ ଗଲେ ସେ ଏହାକୁ ଦେଖି ନରମ ହୋଇଯିବ ଏବଂ ଚମ୍ପାର କଥାଅନୁସାରେ ଚାଲିବ । ଲୁହା ପିଞ୍ଜରା ଘାଟ କୂଳରେ ଥୁଆ ହୋଇଥିବ । ଚମ୍ପା ଜମ୍ବୁକୁ ଆଣି ତା ଭିତରେ ପୂରାଇ ନିଜେ ବାହାର ଓ ଯାହା ଖାଇବାକୁ ଦେଉଥିବ, ତାହା ତାକୁ ଖୁଆଇବ । ଦୁଇ ତିନି ଦିନ ଏପରି ହେବାପରେ ଜମ୍ବୁ ଅଭ୍ୟସ୍ତ ହୋଇଗଲେ ଆମ୍ଭେମାନେ କୌଶଳରେ ଜମ୍ବୁକୁ ଧରି ଚାଲିବା ।

ଚମ୍ପା ଏ କଥାଶୁଣି ଖୁବ ଖୁସିହେଲା ଏବଂ ସେହି ଅନୁସାରେ କାମ କରିବାକୁ ଖୁବ ଆଗ୍ରହ ଦେଖାଇଲା । ମାଷ୍ଟର କହିଲେ, "ହେଉ

## ଜମ୍ବୁ

ଏଥିରେ କେତେ ବିପଦ ଅଛି ବୁଝି ପାରୁଛ ? ଜମ୍ବୁ ନାଠଁକୁ ଯିବାକୁ ହେଲେ ଘୋର ବଣ ଭିତରଦେଇ ଯିବାକୁପଡ଼ିବ । ତା ଭିତରେ ବହୁତ ବାଘ ଭାଲୁ ଓ ହାତୀ ଅଛନ୍ତି । ସେମାନଙ୍କ ଝପିଲେ ଯାଇଁ ଜମ୍ବୁପାଖରେ ପହଞ୍ଚିବ ।" ରମା କହିଲା, "ବାପା । ମୁଁ ତାହା ସବୁ ଭାବିଛି । ମୋ ସାଙ୍ଗରେ ଶିକାରୀମାନେ ଯିବେ ଓ ବଣର ଚାରି ପାଖ ଘେରି ଛପି ରହିବେ । ମୁଁ ଜଙ୍ଗଲ ଭିତରକୁ ନ ଯାଇ ପାଠ ଭରରେ ବସିକରି ବୁଲିବି ଏବଂ ପାହାଡ଼ ଉପରେ ଥିବା ଜମ୍ବୁର ଦୃଷ୍ଟି ମୋ ଅଡ଼କୁ ଅନବରତ ଆକର୍ଷଣ କରିବ । ଜମ୍ବୁ ମୋ ଅଡ଼କୁ ଦୃଷ୍ଟି ପକାଇଲା ମାତ୍ରକେ ନିଶ୍ଚୟ ଧାଇଁ ଆସିବ । ସେ ମୋ ପାଖକୁ ଆସିଲେ ଆଉ କୌଣସି ଜନ୍ତୁର ଭୟ ରହିବ ନାହିଁ । ଜମ୍ବୁର ଦୃଷ୍ଟି ମୋ ଉପରେ ପଡ଼ିବା ଆଗରୁ ଯଦି କୌଣସି ବାଘ ବା ସିଂହ ମୋତେ ଆକ୍ରମଣ କରିବାକୁ ଚେଷ୍ଟା କରନ୍ତି, ତେବେ ଶିକାରୀମାନଙ୍କ ତୋପ ବନ୍ଧୁକ ମୁହଁରେ ସେମାନେ ଧୂଳିରେ ମିଶିଯିବେ ।" ରମାର ଏ ପ୍ରସ୍ତାବ ମାଷ୍ଟର ଓ ଅନ୍ୟ ସମସ୍ତଙ୍କ ମନକୁ ଖୁବ ପାଇଲା । ତାର ଏପରି ସାହସ ଦେଖି ସମସ୍ତେ କାବା ହୋଇଗଲେ ।



## —ଚଉଶୀ—

ତହିଁଅର ଦିନ ରତନପାହୁଣ୍ଡ ପିଞ୍ଜରକୁ ଧରି ସମସ୍ତେ ପାଟକୂଳକୁ ଗୁଲ୍‌ଲେ । ସେଠାରେ ଗୋଟାଏ ବଡ଼ ବୃଦ୍ଧାଭଲରେ ପିଞ୍ଜରକୁ ଏପରି ସଜାଇ ରଖାଗଲା ଯେ ତାହା ଗୋଟିଏ ପଦ୍ମର ଘରପରି ଜଣାଗଲା । ପିଞ୍ଜରା ନିକଟରେ ଅନେକ ଅସ୍ତ୍ରଧାରୀ ସିପେଇ ଛିଡ଼ି ରହିଲେ । ଚମ୍ପା ସାଙ୍ଗରେ ଶତାଧିକ ଶିକାରୀ ଗଲେ ଏବଂ ପାଟକୂଳର ଗୋଟାଏ ଖୋଲା ଜାଗାରେ ତାକୁ ଏପରିଭାବରେ ଠିଆ କଲେ, ଯେଉଁଠାରୁ ପାହାଡ଼ ସିଧା ସଳଖ ଦେଖାଯିବ । ସେଠାରେ ଚମ୍ପା ରହି ଏଣେ ତେଣେ ବୁଲି ବୁଲି ଚାଲି ଏବଂ ଗୀତ ବୋଲି ତାଳିମାରି ଆମୋଦ ପ୍ରମୋଦ କଲା । ଶିକାରୀମାନେ ଛପି ଲୁଚିପଟେ ଇଟାମାନଙ୍କରେ ଲୁଚିରହିଗଲେ ଏବଂ ଚମ୍ପାର ଗୁଡ଼ିପଟକୁ କଡ଼ା ଭାବରେ ପହରା କଲେ । ଚମ୍ପା ପାହାଡ଼ ଆଡ଼କୁ ବରାବର ଚାହିଁଥାଏ ଏବଂ ପାଟକୂଳରୁ ଜଙ୍ଗଲଆଡ଼କୁ ଯିବା ଆସିବା କରୁଥାଏ ।

ଦୀର୍ଘକାଳ ଅଳ୍ପପରେ ପାହାଡ଼ ଦେହରେ ଜନ୍ତୁମାନେ ଯିବା-ଆସିବା କରିବାର ଦେଖାଗଲା । ଚମ୍ପା ଅନେକ ହାତୀ ବାଘ ଭାଲୁ ସିଂହ ଦେଖିବାକୁ ପାଇଲା । ସେ ଦୃଶ୍ୟ ଦେଖି ଯେକୌଣସି ଲୋକ ଭୟରେ ଅଜ୍ଞାନ ହୋଇଯିବ । ମାତ୍ର ଚମ୍ପାର ଖୁବ୍ ସାହାସ ଥାଏ । ତାର ସେଆଡ଼କୁ ଭ୍ରୂକ୍ଷେପ ନ ଥିଲା । ସେ ପଡ଼ିଆ ଘାଡ଼ ଟିକିଏ ବୁଢ଼ୁ-

# ଜମ୍ବୁ

ଚତୁରଅ ବଣଭିତରେ ବୁଲୁଥିଲ। ବୁଲି ବୁଲି ତା ଦୃଷ୍ଟି ଗୋଟାଏ ବଡ ବୁଦାରେ ପଡ଼ିଲା। ସେ ବୁଦା ଗୋଟାଏ ଖୁବ୍ ବଡ ଗଛରେ ମାଡିଥିଲ ଏବଂ ତହିଁରେ ଲାଲ୍ ଟହଟହ ଲେଖନ କୋଳିମାନ ପେନ୍ଥା ପେନ୍ଥା ହୋଇ ଅଗରୁ ମୂଳଯାଏ ଝୁଲୁଥିଲ। ଜମ୍ବୁ ତାହା ଦେଖି ସେଆଡ଼କୁ ଧାଇଁଗଲା। ସେ ଏତେ ଲେଖନ କୋଳି ଗଛରେ କେବେହେଁ ଦେଖି ନ ଥିଲା। ସମସ୍ତ କୋଳିରେ ପାଣ୍ଡଏ କୋଳି ହୋଇପାରେ। ସେ ତାହା କୋଳି କେତେ ଖାଇଲା ଓ କେତେକ ଅଣ୍ଟିରେ ପୂରାଇଲା। ଏପରି ଭାବରେ ତନ୍ମୟ ହୋଇ ଜମ୍ବୁ ପ୍ରାୟ ଘଣ୍ଟାଏ କାଳ କୋଳି ତୋଳି ଖାଇବାରେ ଲାଗିଲା। ପଞ୍ଚଅ ଛଣ୍ଡ ବଣଭିତରକୁ ଯିବା ତାର ଅଦୌ ଉଚିତ ନ ଥିଲା। ମାତ୍ର ସେ କୋଳି ଲୋଭରେ ଉପଦେଶ ନ ମାନି ପଶିଗଲା। ଶିକାରୀ-ମାନେ ନିଜ ନିଜ ଗୁପ୍ତସ୍ଥାନରୁ ତାକୁ ବାଙ୍କି ସାବଧାନ କରି ପାରିଲେ ନାହିଁ। କାରଣ ଜମ୍ବୁ ଛଡା ଅନ୍ୟ ଲୋକ ସେ ବଣରେ ଥିବାର ଜମ୍ବୁ ଜାଣିପାରିଲେ ଘୋର ଅନିଷ୍ଟ ଘଟାଇପାରେ ଏବଂ ତାକୁ ଧରିବା ପାଇଁ ଯେଉଁ ଅପ୍ରୋଜନ ଗ୍ଳଲଛୁ ସେଥିରେ ବାଧା ପଡ଼ିପାରେ। ଏଥିପାଇଁ ସେମାନେ ଖୁବ୍ ନିସ୍ତବ୍ଧ ଓ ସାବଧାନ ରହୁଥିଲେ।

ଏ ସମୟରେ ଜମ୍ବୁ ଉପରକୁ ଗୋଟାଏ ବିପଦ ଅଲକ୍ଷ୍ୟରେ ମାଡିଆସିଲା। ଗୋଟାଏ ମହାବଳ ସିଂହ ଜମ୍ବୁକୁ ପାହାଡ ଉପରୁ ଲକ୍ଷ୍ୟକରି ଅସ୍ତ୍ରେ ଅସ୍ତ୍ରେ ତାଆଡ଼କୁ ଆସିଲା ଏବଂ ଯେତେବେଳେ ଖୁବ୍ ନିକଟବର୍ତ୍ତୀ ହେଲା, ସେତେବେଳେ ଭୂଇଁରେ ବେଟିଯାଇ

ଏକାପଣୀ

ଛପି ଛପି ତାକୁ ଝାମ୍ପମାରିବାକୁ ଉଦ୍ୟତ ହେଲା । ଅଳ୍ପ ଗୋଟାଏ ମାତ୍ର କୁଦାରେ ଚମାର କଥା ଶେଷ । ମାତ୍ର ଚମାର ସେଆଡ଼କୁ ଆଦୌ ଲକ୍ଷ୍ୟ ନ ଥିଲା । ସେ ମହା ଆନନ୍ଦରେ ଢୋଲ ଢୋଲିବାରେ ଲାଗିଥିଲା । ଏଣେ ଶିକାରୀମାନେ ଚମାକୁ ଦେଖିପାରୁ ଥିଲେ ମଧ୍ୟ ଗୁପ୍ତରେ ବୁଦା ଭିତରେ ଭିତରେ ଲେଉଟି ମାଡ଼ି ଆସୁଥିବା ସିଂହକୁ ଆଦୌ ଦେଖିପାରୁ ନଥିଲେ । ସିଂହ ଚମା ଉପରକୁ ଶେଷ ଝାମ୍ପ-ମାରିବା ପାଇଁ ଠିକ୍ ଉଚ୍ଛୁଳିଲା ବେଳକୁ ହଠାତ୍ ଜମ୍ବୁ ସେଠାରେ ପହଞ୍ଚିଗଲା । ସେ କୁଆଡ଼େ ଥିଲା, କେତେବେଳେ ଆସିଲା, କିଛି ଜଣାଯାଉ ନଥିଲା । ସେ ଗୋଟାଏ ବଜ୍ରଭଳି ଉପରୁ ପତନରେ ପହଞ୍ଚି ଆସି ସିଂହ ଉପରେ ପଡ଼ିଗଲା ଏବଂ ଭୟଙ୍କର ରଡ଼ି କରି ତା ଦେହକୁ କୁଣ୍ଢେଇ ତାକୁ ବହୁତ ପଛକୁ ଠେଲି ନେଲା । ବାଘ ସିଂହମାନଙ୍କୁ ଶିକାର ମୁହଁରେ ବାଧା ଦେଲେ ସେମାନେ କ୍ରୋଧାନ୍ଧ ହୋଇପଡ଼ନ୍ତି ଏବଂ ଅତି ଭୟଙ୍କର ଭାବରେ ଆତତାୟୀକୁ ଆକ୍ରମଣ କରନ୍ତି । ବର୍ତ୍ତମାନ ଏ ସିଂହ ଜମ୍ବୁର ଅନୁଗତ ହେଲେ ମଧ୍ୟ ଶିକାର ମୁହଁରେ ତାକୁ ବାଧା ଦେବାରୁ ସେ ସହି ପାରିଲାନାହିଁ; ଆଖି ପିଛୁଳା ମାତ୍ରକେ ଜମ୍ବୁ ଉପରକୁ ଡେଇଁ ପଡ଼ି ତାକୁ ଭୀଷଣ ଭାବରେ ଆକ୍ରମଣ କଲା । ଜମ୍ବୁ ମଧ୍ୟ ସେଥିପାଇଁ ପ୍ରସ୍ତୁତ ଥିଲା । ସେ ନିମେଷ ମାତ୍ରକେ ସିଂହ ଉପରକୁ ଝାମ୍ପି ପଡ଼ି ବଜ୍ର ସମାନ ବିଧାମାନ ତା କାନମୁଣ୍ଡା ଉପରେ ଲଗାଇଦେଲା । ତହିଁରେ ସିଂହ ଟିକିଏ ଅଜ୍ଞାନ ହୋଇଯିବାରୁ ଜମ୍ବୁ ତା ତଣ୍ଟିକୁ ଧରି ଗଡ଼୍ ଗୁଡ଼୍ କରି ଚପାଇଦେଲା ଏବଂ ତୁରନ୍ତ ହାତରେ ତା ଶଙ୍ଖିଅଳୁ ଛଡ଼ି ଅଣ୍ଟାରେ ଗୁଡ଼ାକ ଜୋରରେ ଆଘାତ କଲା । ଏଥିରେ ସିଂହ ବ୍ୟାକୁଳ ଭାବରେ

ଉତ୍ତରର ଛଟପଟ ହୋଇ ମରି ପଡ଼ିଗଲା । ଜମ୍ମୁ ତା ମଲ୍ଲଦେହକୁ ତଳି ଗୁବଥର ଟେକି ଫିଙ୍ଗି ଯେତେବେଳେ ବୁଝିପାରିଲା ଯେ ସିଂହଟା ମରିଯାଇଛି, ସେ ତାକୁ ଗୋଇଠାଏ ମାରି ବହୁତ ଦୂରକୁ ଗଡ଼ାଇ ଦେଲା ଏବଂ ଚମ୍ପା ନିକଟକୁ ଧାଇଁ ଯାଇ ତାର ଦୁଇ ହାତ ଧରି ବହେ ନାଚିଲା । ଚମ୍ପା ମଧ୍ୟ ଜମ୍ମୁ ଜମ୍ମୁ ବୋଲି କହି ତାର ଦେହ ମୁହଁ ଅନେକ ଅଉଂସିଲା ଏବଂ ଅଣ୍ଟିରେ ରଖିଥିବା ଲେଞ୍ଜନ ଭୋଳି ଖାଇବାକୁ ଦେଲା । ଜମ୍ମୁ ତାହା ଏତେ ଆଗ୍ରହରେ ଖାଇଲା ଯେ ସତେ ଯେପରି ସେ ଭୋଳି ସେ ଜୀବନରେ ଦେଖି ନ ଥିଲା । ଅଜି ସେ ତାର 'ସାମ୍ପା'କୁ ପାଇଥିବାରୁ ସବୁ ଭୁଲିଗଲା ଏବଂ ତାକୁ କୁଣ୍ଢାଇ ସାମ୍ପା ସାମ୍ପା ବୋଲି କହି କେତେ ନାଚିଲା ।

ଏପରି ଭାବରେ ଅନେକ ସମୟ ଅଳାପ ହେଲା ପରେ ଚମ୍ପା ଜମ୍ମୁର ହାତ ଧରି ସେହି ପଥ ଘର ଅଡ଼କୁ ଗଲା ଏବଂ ଜମ୍ମୁ ସହ ତା ଭିତରେ ଯାଇ ବସିଲା । ଜମ୍ମୁ ଚମ୍ପାକୁ ପାଇ ଯେତେ ଆନନ୍ଦିତ ହେଲା ସେ ମଣିଷ ହୋଇଥିଲେ ସିନା ତାହା ନାନା ପ୍ରକାରରେ ପ୍ରକାଶ ପାଇଥାନ୍ତା । ମାତ୍ର ଜମ୍ମୁ ପଶୁ ଥିବାରୁ କୌଣସି କଥା ପ୍ରକାଶ କରି ପାରୁ ନ ଥିଲା । ତେବେ ହେଲେ ଯେଉଁ ଭାବ ତା ଠାରୁ ବାହାରି ପଡ଼ୁଥିଲା, ତହିଁରୁ ଅନେକ କଥା ପ୍ରକାଶିତ ହୋଇ ପଡ଼ୁଥିଲା । ଚମ୍ପା ସେଠାରେ ଜମ୍ମୁକୁ ଅନେକ ପଦାର୍ଥ ଖାଇବାକୁ ଦେଲା । ବହୁତ ଫଳ ମୂଳ ନାନା ପ୍ରକାର ମିଷ୍ଟାନ୍ନ ଓ ମାଂସ ଜମ୍ମୁ ଚମ୍ପା ହାତରୁ ଖାଇ ଆନନ୍ଦରେ ଅଧୀର ହୋଇ ପଡ଼ିଲା । ପୂର୍ବ ଅବସ୍ଥା ଅନୁସାରେ ଚମ୍ପା ଜମ୍ମୁକୁ ଧରି ସେଠାରେ ଦୁଇଦିନ ରହିଲା । ସେତ—

ମାନେ ଖାଇବା ଜିନିଷ ଆଣି ଯୋଗାଇ ଦେଉଥିଲେ । ମଣିଷମାନଙ୍କୁ ଦେଖି ଜମ୍ବୁ ଅଦୌ ବିରକ୍ତ ବା ବିଚଳିତ ହେବା ଭଳି ଜଣାଗଲା ନାହିଁ । ସେଠାରେ ଦୁଇ ଦିନ ରହିବା ପରେ ଚମ୍ପା ଓ ଜମ୍ବୁ ପିଞ୍ଜରା ଭିତରେ ଥାଇ ଉଡ଼ାହୋଇ ନେହରୁ ନିକଟକୁ ଗଲେ । ସେତେବେଳେ ସୁଦ୍ଧା ଜମ୍ବୁ କୌଣସି ବିରକ୍ତି ପ୍ରକାଶ କଲା ନାହିଁ । ସେ ଚମ୍ପା ନିକଟରେ ଥିବାରୁ ବୋଧହୁଏ ମହାସୁଖରେ ଯାଉଥିଲା । ସମସ୍ତ ଦୁଃଖ ସମସ୍ତ ଆପଦ ଓ ସମସ୍ତ ଅଶାନ୍ତିକୁ ସେ ସୁଖ ବୋଲି ମନେ କରୁଥିଲା ।

ଦିଲ୍ଲୀରେ ଜମ୍ବୁ ପହଞ୍ଚିଲା ପରେ କେହି ଯେପରି ତାକୁ ଖୋଚଡ଼ା ଦେଖାଇ ବିରକ୍ତ ନ କରନ୍ତି, ସେଥିପାଇଁ କଡ଼ା ନିୟମ ଜାରି କରାଗଲା । ସମସ୍ତେ ଅତି ସାବଧାନ ହୋଇ ଜମ୍ବୁର ପିଞ୍ଜରା ନିକଟରେ ଚଳାଚଳ ହେଲେ । ଚମ୍ପା ସାହାଯ୍ୟରେ ଜମ୍ବୁ ଲୋକମାନଙ୍କ ସଙ୍ଗେ ଗୁରୁ ପାଞ୍ଚ ଦିନ ଭିତରେ ଅଭ୍ୟସ୍ତ ହୋଇ ପଡ଼ିଲା । ଆଉ କେଉଁଠି ସେ କୌଣସି ବିରକ୍ତି ଦେଖାଇଲା ନାହିଁ । ତେଣୁ ପ୍ରହରୀମାନେ ତାର ପିଞ୍ଜରା ଭିତରେ ପଶି ତାର ମଳ ମୂତ୍ର ପରିଷ୍କାର କଲେ ଓ ତାକୁ ଶୋଇବା ପାଇଁ ଗୋଟିଏ ପାଳର ଗଦି ଭିତରେ ପାରି ଦେଲେ । ଚମ୍ପା ସେ ଗଦିରେ ଶୋଇବାକୁ ଜମ୍ବୁକୁ ଶିଖେଇ ଦେଲା । ଗଛ ଡାଳରେ ପଥର ଉପରେ ଓ ଖୋଲା ପଡ଼ିଆରେ ଏତେ କାଳ ଶୋଇ ଶୋଇ ସେ ଅଭ୍ୟସ୍ତ ହୋଇ ପଡ଼ିଥିଲା । ଆଜି କୋମଳ ଗଦି ଉପରେ ସେ ବହୁତ ଆରାମ ଉପଭୋଗ କଲା । ଚମ୍ପା ସହ ଲୋକେ ପିଞ୍ଜରା ଭିତରକୁ ଯାଇ ଜମ୍ବୁର ଦେହ ମୁହଁ ସଫା ସୁତ୍ର କରିଦେଲେ ଏବଂ ସୁବାସିତ ଜଳରେ ତାକୁ ସ୍ନାନ କରାଇ ଦେଲେ । ଏଥିରେ ତାର ଆନନ୍ଦ ବହୁତ ବଢ଼ିଗଲା । ସେ ଖାଇ ପିଇ ଅସୀମ ଆରାମରେ ଗଦି ଉପରେ ଶୋଇ ପଡ଼ିଲା ।

ଚନ୍ଦ୍ରସେନା

# —ପଚାଶୀ—

ଏପରି ଭାବରେ ଏକ ସପ୍ତାହ ଗଲା ପରେ ଡେଭି ଭାଇଙ୍କ ସମସ୍ତେ ଯାତ୍ରାଆରମ୍ଭ କଲେ । ଜମ୍ବୁ ପିଞ୍ଜରାରେ ଗଡ଼ ଉପରେ ଶୋଇଲା ପରେ ତାକୁ ଲୋକେ ଟାଣି ଟାଣି ନେଲେ । ରମ୍ଭା ମୋଟିଏ ଡଙ୍ଗାରେ ବସି ତା ପାଖେ ପାଖେ ଗଲା ଏବଂ ଜମ୍ବୁର ସମସ୍ତ ଖବର ବୁଝୁଥିଲା । ସମସ୍ତେ ଅଠ ଦିନରେ ବନ ଭୂମି ପାର ହୋଇ ଦେଶ ମଧ୍ୟରେ ପଶିଲେ । ଜମ୍ବୁକୁ ଦେଖିବାକୁ ଅନେକ ଲୋକ ଧାଇଁଲେ, ମାତ୍ର ସିପେଇମାନେ ଲୋକଙ୍କୁ ଦୂରକୁ ଘଉଡ଼ାଇବାରେ ଲାଗିଲେ । ଜମ୍ବୁ ଧରାହୋଇ ଆସୁଥିବା ଖବର ଲୋକ ମୁହଁରେ ବହୁ ଆଗରୁ ସ୍ପଷ୍ଟ ହୋଇଗଲା ଏବଂ ଖବର କାଗଜରେ ବାହାରିଲା । ହଜାର ହଜାର ଲୋକ ଦେଖିବାକୁ ଧାଇଁଲେ । ସିପେଇମାନେ ବରାବର ଲୋକଙ୍କୁ ତଡ଼ି ଦେଉଥିଲେ । ଏପରି ଭାବରେ ଦଶଦିନ ରାସ୍ତାରେ କଟାଇ ସମସ୍ତେ ଶେଷରେ ଆସି ନାଗପୁରରେ ପହଞ୍ଚିଲେ । ସହରଭିତରେ ଏତେ ଭିଡ଼ ହେଲା ଯେ ତା ଭିତରେ ଏମାନେ ଯିବା ଅସମ୍ଭବ ହୋଇ ପଡ଼ିଲା । ସରକାର ଘୋଡ଼ାବସା ସିପେଇ ଲଗାଇ ଲୋକଙ୍କୁ ଅଟକାଇ ଦେବାରୁ ସମସ୍ତେ ସୁବିଧାରେ ଆସି ସହର ନଗରରେ ପହଞ୍ଚିଲେ ।

ଜମ୍ବୁଠାରେ ଟିକିଏ ହେଲେ ଚାଞ୍ଚଲ୍ୟ ଦେଖାଯାଉ ନ ଥିଲା କିମ୍ବା ବିରକ୍ତିର ଲକ୍ଷଣ ତାଠାରୁ ଆଦୌ ପ୍ରକାଶ ପାଉ ନ ଥିଲା । ଜମ୍ବୁର

ଏପରି ପରିବର୍ତ୍ତନ ଲକ୍ଷ୍ୟକରି ମାଷ୍ଟର ଓ ଅନ୍ୟମାନେ ବିସ୍ମିତ ହୋଇଗଲେ । ଯେ ଯେତେ ତାକୁ ଦେଖିବାକୁ ଆସିଲେ ଜମ୍ବୁ ଖୁସି ଥିବାର ସମସ୍ତେ ଅନୁଭବ କଲେ । ସମସ୍ତେ ସାବଧାନ ଥିବାରୁ କୋରଡ଼ା ବା ବାଙ୍କୁଧର କେହି ତା ପାଖକୁ ଆସୁ ନ ଥିଲେ । ତେଣୁ ଭଲେ ଭଲେ ସବୁ ଚାଲୁଥିଲା । ଲାଟସାହେବ ଓ ତାଙ୍କ ମନ୍ତ୍ରୀମାନେ ଜମ୍ବୁକୁ ଦେଖିବାକୁ ଆସିଲେ ଏବଂ ତାକୁ ଅନେକ ଫଳମୂଳ ଖାଇବାକୁ ଦେଲେ । ଜମ୍ବୁ ଚମ୍ପାଛଡ଼ା ଅନ୍ୟ କାହା-ହାତରୁ କୌଣସି ଖାଦ୍ୟ ଜିନିଷ ଖାଉ ନ ଥିଲା । ଲାଟ୍‌ସାହେବ ଯାହା ତା ଆଡ଼କୁ ବଢ଼ାଇ ଦେଲେ ସେ ତାହା ଆଦୌ ଛୁଇଁଲା ନାହିଁ, ଦାନ୍ତରଗଡ଼ି ଆଖି କଟମଟକରି ବିରକ୍ତିର ଭାବ ଦେଖାଇଲା । ସାଙ୍ଗେ ସାଙ୍ଗେ ଚମ୍ପାକୁ ଡକରା ହେଲା । ଲାଟ୍‌ସାହେବ ଓ ମନ୍ତ୍ରୀମାନେ ତାକୁ ସ୍ନେହ ଦେଖାଇଲେ । ଚମ୍ପାଯୋଗେ ଏତେ ବଡ଼ ଜାନୁଆର ବଶ ହୋଇ ଆସିଲା ଏବଂ ଅନେକ ପରିମାଣରେ ଶାସନାରେ ରହିଲା ବୋଲି ଲାଟ୍ ତାକୁ ବହୁତ ପ୍ରଶଂସା କଲେ । ଲାଟ୍ ଗୋଟିଏ ହୀରା ନୀଳା ବସା ସୁନା ପଦ୍ମହାର ପକେଟରେ ଆଣିଥିଲେ । ସେ ସାଙ୍ଗେ ସାଙ୍ଗେ ସେ ହାରଟିକି ଚମ୍ପା ବେକରେ ଗଳାଇ ଦେଲେ । ଚମ୍ପା ଲାଟ୍‌ଙ୍କ ପାଦତଳେ ମୁଣ୍ଡିଆମାରି ତାଙ୍କ ଫଳ ଗୁଛାକ ନେଇ ପିଞ୍ଜରାଭିତରକୁ ଗଲା ଏବଂ ଜମ୍ବୁକୁ ଖାଇବାକୁ ଦେଲା । ଜମ୍ବୁ ସେ ଫଳ ଗୁଛାକ ଚମ୍ପା ହାତରୁ ନେଇ ଆନନ୍ଦରେ ଖାଇଦେଲା । ଜମ୍ବୁ ଖାଇସାରିଲେ ଚମ୍ପା ସେ ହାରଟି ତା ବେକରେ ଗଳାଇ ଦେଲା । ଜମ୍ବୁ ମନରେ କି ଧାରଣା ହେଲା କେଜାଣି ସେ ଆନନ୍ଦରେ ଚମ୍ପା କାନ୍ଧରେ ହାତ ପକାଇ ବହୁତ ନାଚିଲା ଏବଂ

ଘୃଙ୍ଗୁ ଘୃଙ୍ଗୁ ଶବ୍ଦ କଲା । ଲାଟ୍‌ସାହେବ ଏଥିରେ ବହୁତ ଆନନ୍ଦ ଅନୁଭବ କରି ମାହୁନ୍ତଙ୍କ ସଙ୍ଗେ କରମର୍ଦ୍ଦନ କଲେ ଏବଂ ତାଙ୍କୁ ଦଶ ହଜାର ଟଙ୍କା ପୁରସ୍କାର ଦେଲେ । ଏ ସମୟରେ ଜମ୍ବୁ ସେ ହାରକୁ ବେକରୁ ବାହାର କରୁ କରୁ ଛିଣ୍ଡାଇ ଦେଲା ଏବଂ ଓସ ଛିଣ୍ଡା ହାରଟି ମୋ ବେକରେ ଗଳାଇ ଦେଲା । ସେଠାରେ ଯେତେ ଲୋକ ଥିଲେ ସମସ୍ତେ ଏହାଦେଖି ଆନନ୍ଦରେ କରତାଳି ଦେଲେ ।

---

## —ଛବିଶୀ—

ଜମ୍ବୁକୁ ଅଉ ପିଞ୍ଜରା ଭିତରେ ନରଖି ଗୋଟିଏ ପଥର ଘରେ ନେଇ ରଖାଗଲା । ତହିଁରେ ଗୋଟିଏ ଲମ୍ବା ଖଟ ଉପରେ ଗୋଟିଏ ଗଦି ପକାଗଲା । ଚମ୍ପା ଜମ୍ବୁକୁ ତା ଉପରେ ନେଇ ଶୁଆଇ ଦେଲା । ଏଣିକି ଚମ୍ପାର ଶିକ୍ଷାବଳରେ ଜମ୍ବୁ କେଉଁଠାରେ ଖାଇବ, କେଉଁଠାରେ ମଳ ମୂତ୍ର ଛାଡ଼ିବ ଏବଂ କେଉଁଠାରେ ଶୋଇବ ତାହା ଶିଖିଯାଇ ସେହିପରି କଲା । ଜମ୍ବୁପରି ଏତେ ବଡ଼ ବ୍ୟାଘ୍ର ଜଙ୍ଗଲ ମହାବୀର ଏଘର ଭିତରେ ବରାବର ଅବଦ୍ଧ ହୋଇ ରହିଲେ ଅଳ୍ପଦିନେ କାଳେ ରୋଗୀ ହୋଇ ମରିଯିବ, ଏଥିପାଇଁ ଚମ୍ପା ସାହାଯ୍ୟରେ ସର୍ଦ୍ଦାରମାନେ ଜମ୍ବୁକୁ କ୍ରମେ କ୍ରମେ ବହୁ ପ୍ରକାର କଠିନ ବ୍ୟାୟାମମାନ ଶିଖେଇ ଦେଲେ । ଜମ୍ବୁ ଚମ୍ପା ଆଦେଶରେ ପ୍ରତ୍ୟହ ସକାଳ ସନ୍ଧ୍ୟାରେ ସେ ବ୍ୟାୟାମମାନ କରି ବହୁତ ଆନନ୍ଦ ଉପଭୋଗ କଲା । ଏଣିକି ସେ ସର୍ଦ୍ଦାରମାନଙ୍କ ପ୍ରତି ଆଉ ବିରକ୍ତି ଭାବ ଦେଖାଇଲା ନାହିଁ ଏବଂ ଘୃଣା ମଧ୍ୟ କଲା ନାହିଁ । ଏହା ବୋଲି ଯେ ସେ ସେମାନଙ୍କ ହୁକୁମ ମାନି ଚଳୁଥିଲା ଏପରି ନୁହେଁ । ସମସ୍ତ କାମ ଚମ୍ପାର ଆଦେଶ ବଳରେ ହେଉ ବା ସ୍ନେହ ବଳରେ ହେଉ ସେ ମହାଆନନ୍ଦରେ ସମସ୍ତ କରି ଯାଉଥିଲା । ଦିନେ ଜଣେ ସର୍ଦ୍ଦାର ଜମ୍ବୁକୁ କସରତ ଶିଖାଉ ଥାନ୍-ବେଳେ ସେ ତା କଥା ନ ମାନି ଅନ୍ୟମନସ୍କ ହେଲା । ତହୁଁ ସର୍ଦ୍ଦାର ତା ଉପରେ ରାଗିଯାଇ 'ଜମ୍ବୁ ଜମ୍ବୁ' ବୋଲି ବଡ଼ ପାଟିରେ

ଡାକ ଛାଡ଼ିଲା । ଜମ୍ବୁ ରାଗରେ ତା ଅଡ଼କୁ ଆଖି ରଙ୍ଗ କରି ଶୁଣ୍ଢ ହାତ ମୁଠା କଲା । ସର୍ଦ୍ଦାର ଏତେ କଥା ଲକ୍ଷ୍ୟ ନ କରି ପୁଣି ତାକୁ ସେହିପରି ଭର୍ତ୍ସନା ସ୍ୱରରେ ଡାକ ଛାଡ଼ିଲା । ଜମ୍ବୁ ବିଜୁଳି ବେଗରେ ତା ଅଡ଼କୁ ଦୌଡ଼ି ଯାଇ ତା ପିଠିରେ ଏପରି ଗୋଟାଏ ବିଧା ମାରିଲା ଯେ ସର୍ଦ୍ଦାର ମାଟି କାମୁଡ଼ି ତଳେ ପଡ଼ିଗଲା ଏବଂ ତାର ଜ୍ଞାନ ଲୋପ ହୋଇଗଲା । ହଠାତ୍ ଚମ୍ପା ସେଠାକୁ ଧାଇଁଯାଇ "ଜମ୍ବୁଟି" "ଜମ୍ବୁଟି" ବୋଲି ଡାକ ଛାଡ଼ିବାରୁ ଜମ୍ବୁ ସର୍ଦ୍ଦାରକୁ ଛାଡ଼ିଦେଇ ଚମ୍ପା ପାଖକୁ ଧାଇଁଗଲା ଏବଂ 'ସାମ୍ପା ସାମ୍ପା' ବୋଲି କହି ସତେ ଯେପରି ଅପରାଧ ପାଇଁ କ୍ଷମା ମାଗିଲା । ସର୍ଦ୍ଦାର ବହୁ ଚିକିତ୍ସା ପରେ ଏକମାସରେ ଯାଇ ଭଲ ହେଲା । ସେ ଦିନୁ ଜମ୍ବୁ ପ୍ରତି ସମସ୍ତେ ସାବଧାନ । ସେ ଚମ୍ପା ଛଡ଼ା । ପୃଥିବୀରେ ଆଉ କାହାର ଅଧୀନ ହେବାକୁ ରାଜି ନୁହେଁ ।



## —ସତେଇଶୀ—

ଏ ଘଟଣା ପରେ ପରେ ଏପରି ଗୋଟାଏ କଥା ହେଲା ଯହିଁରେ ଜମ୍ମୁର ସମ୍ମାନ ଅନେକ ପରିମାଣରେ ବଢ଼ିଗଲା । ଜମ୍ମୁ ବିଷୟ ଅନୁସନ୍ଧାନ କରି ସରକାରଙ୍କୁ ଜଣାଇବାକୁ ଯେଉଁ ବିଶେଷଜ୍ଞମାନେ ନିଯୁକ୍ତ ହୋଇଥିଲେ, ସେମାନେ ଅନୁସନ୍ଧାନ କରି ସେମାନଙ୍କ ରିପୋର୍ଟ ସରକାରଙ୍କୁ ଦେଇଥିଲେ । ସରକାର କର୍ତ୍ତୃମାନେ ସେ କଥା ସାଧାରଣଙ୍କୁ ଜଣାଇଦେଲେ । ସରକାରୀ ରିପୋର୍ଟରେ ଯାହା ଲେଖାଥିଲା, ତାର ଅବିକଳ ନକଲ ତଳେ ଦିଆଗଲା ।

"ଜମ୍ମୁ ମାନ୍ଦ୍ରାଜ ପ୍ରଦେଶର ଜଣେ ବିଖ୍ୟାତ ଜମିଦାରଙ୍କ ନାତି ବୋଲି ବହୁ ଅନୁସନ୍ଧାନରୁ ଜଣା ଯାଇଅଛି । ଜମିଦାର ତାଙ୍କ ସମସ୍ତ ପରିବାରସହ ଆଜକୁ ତେଇଶୀ ବର୍ଷ ପୂର୍ବେ ସେ ମହାବଣ ଭିତର ଦେଇ ତୀର୍ଥ ଯାତ୍ରା କରିବାକୁ ଯାଉଥିଲେ । ଅରଣ୍ୟ ଭିତରେ ଜନ୍ତୁ ଓ ଦସ୍ୟୁମାନଙ୍କ ଦ୍ୱାରା ସେ ଓ ତାଙ୍କର ସମସ୍ତେ ନିହତହେଲେ । ଗୋଟିଏ ଛଅ ବର୍ଷର ନାତି ଭୟରେ କୁଆଡ଼େ ପଳାଇ ଗଲା । ତାହା କେହି ଜାଣି ପାରିଲେ ନାହିଁ । ସେହି ଶିଶୁଟିର ନାମ ଥିଲା ଜମ୍ମୁ । ଜମ୍ମୁକୁ ସେତେବେଳେ ବହୁତ ଅନୁସନ୍ଧାନ କରା ଯାଇଥିଲା ଓ ଅନେକ ଲୋକଙ୍କୁ ପଚରା ଯାଇଥିଲା । କେହି ତା ବିଷୟରେ କିଛି କହିପାରିଲେ ନାହିଁ ।

ମାଙ୍କ ଜମିଦାରଙ୍କ ଧ୍ୱଂସ ସଙ୍ଗେ ନିରୁଦ୍ଦିଷ୍ଟ ଶିଶୁ ଜମ୍ବୁର ନାମ ଜଣକ ହୋଇ ବହୁକାଳ ଯାଏ ଲୋକଙ୍କ ମୁହଁରେ କୁହାକୁହି ହେଲା।

ଲୋକଙ୍କ ମନରୁ ସେ କଥା ଓ ଜମ୍ବୁ ନାମ ପାଶୋର ନ ଯାଉଣୁ ମହାବଣ ଭିତରେ ଏକ ଅଦ୍ଭୁତ ଜୀବର ଆବିର୍ଭାବ ହେଲା ଏବଂ ତା ଯୋଗେ ସମ୍ପ୍ରଦାୟ ବଣ ଆତଙ୍କିତ ହୋଇପଡିଲା। ତା ଫଳରେ ବଣର ଜନ୍ତୁମାନେ ଏଣେ ତେଣେ ପଳାଇ ବାହାରେ ଫସଲସବୁ ନଷ୍ଟ କଲେ ଏବଂ ଗାଁ ଗଣ୍ଡାମାନଙ୍କରେ ପଶି ଲୋକଙ୍କ ଧନ ଜୀବନ ଉପରେ ଅଶେଷ ବିପଦ ଘଟାଇଲେ। ଏଣେ ଜମ୍ବୁ ନାମକ ତିନି ବର୍ଷର ଶିଶୁଟି ବଣ ଜନ୍ତୁମାନଙ୍କ ସାହାଯ୍ୟରେ ଅଦ୍ଭୁତ ଉପାୟରେ ବଢି ସମ୍ପୂର୍ଣ୍ଣ ବଣୁଆ ହୋଇଗଲା ଏବଂ ତାର ମଣିଷ ସ୍ୱଭାବ ସମ୍ପୂର୍ଣ୍ଣ ବଦଳିଯାଇ ପଶୁଭାବ ହୋଇଗଲା। କାରଣ ସେ ପଶୁମାନଙ୍କ ସବୁ ବିଷୟରେ ଅନୁକରଣ କରି ଚାଲିଲା, ସଙ୍ଗେ ସଙ୍ଗେ ତାର ଚେହେରା ମଧ୍ୟ ପଶୁ ପରି ହୋଇଗଲା ଏବଂ କ୍ରମେ କ୍ରମେ ତାହା ବଢିଲା। ଯେ ଯେଉଁ ପରିସ୍ଥିତି ଓ ଅବସ୍ଥା ଭିତରେ ବଢେ ସେ ସେହି ଅବସ୍ଥାର ଅଧୀନ ହୋଇ ପଡେ। ଏହା ପ୍ରକୃତିର ନିୟମ। ସୁତରାଂ ଜମ୍ବୁ ଦୀର୍ଘକାଳ ବଣ ମଧ୍ୟରେ ପଶୁମାନଙ୍କ ମେଳରେ ରହିବା ଦ୍ୱାରା ସେହି ପ୍ରକୃତି ଓ ସେହି ଚେହେରା ଧରିବା ବିଚିତ୍ର ନୁହେଁ। ବୈଜ୍ଞାନିକମାନେ ଏହି ମତ ଦୃଢ଼ ଭାବରେ ଦେଇ ଅଛନ୍ତି।

"ଜମ୍ବୁ ଏପରି ଭାବରେ ବଢି ବାଘ, ସିଂହଙ୍କଠାରୁ ଲମ୍ଫନ ଓ ଗର୍ଜ୍ଜନ ଶକ୍ତି ସଂଗ୍ରହ କଲା, ମାଙ୍କଡ଼ମାନଙ୍କଠାରୁ ଗଛରେ

ଚଢ଼ିବା ଓ ଏ ଗଛରୁ ସେ ଗଛକୁ ଅନାୟାସରେ ଡେଇଁବା ଶିଖିଲେ ଏବଂ କୁମ୍ଭୀରମାନଙ୍କଠାରୁ ପାଣିରେ ପହଁରିବା ଓ ବୁଡ଼ି ଅନେକଦୂର ଗୁଲିଯିବା ପ୍ରଭୃତି ବିଦ୍ୟାମାନ ଶିଖି ତହିଁରେ ଅଭ୍ୟସ୍ତ ହେଲେ । ତା ଫଳରେ ସେ ବଳବାନ୍ ହୋଇ ଉଠିଲେ ଏବଂ ହାତୀ, ବାଘ, ସିଂହ ପ୍ରଭୃତି ବଡ଼ ବଡ଼ ବନ୍ୟ ଜନ୍ତୁମାନଙ୍କୁ ନିଜର ପ୍ରବଳ ଶକ୍ତି ବଳରେ ଆୟତ୍ତ କରିବାକୁ ଲାଗିଲେ । ତେଣୁ ସମସ୍ତ ବନ୍ୟ ଜନ୍ତୁ ତାର ବଶୀଭୂତ ହୋଇ ପଡ଼ିଲେ । ଜମ୍ବୁ ଅଳ୍ପକାଳ ଭିତରେ ସେ ବଣରେ ମାଲିକ ହୋଇଗଲା ଏବଂ ବଣରେ ଯେତେ ଦସ୍ୟୁ ବାସ କରୁଥିଲେ ସେମାନେ ତା ଉପଦ୍ରବରେ ବଣ ଛାଡ଼ି ବାହାରି ଆସିଲେ । ସେମାନେ ଜମ୍ବୁ ବିଷୟ ବିଶେଷ ଭାବରେ ବାହାରେ ପ୍ରଚାର କଲେ ।

“ଜମ୍ବୁ ଯୋଗେ ଅନେକ ଗ୍ରାମ ନଗର ଭାଙ୍ଗି ଯାଉଛି, ପ୍ରଜାମାନେ ଏଣେ ତେଣେ ପଳାଇ ଯାଉଛନ୍ତି ଏବଂ ସହସ୍ର ସହସ୍ର ମାଣ ଶସ୍ୟକ୍ଷେତ୍ର ନଷ୍ଟ ହେଉଛି । ତେଣୁ ସରକାର ଏବେ ଚେଷ୍ଟାକରି ସର୍ଜନ ମାଷ୍ଟର ଓ ତାଙ୍କ କନ୍ୟା ଟମକୁନ୍ଦଳଙ୍କ ସାହାଯ୍ୟରେ ତାକୁ ଧରିବ ଆସିଛନ୍ତି । ଜମ୍ବୁକୁ ବଧ କରିବାକୁ ହେବ କି ତା ପ୍ରତି ଅନ୍ୟ ବ୍ୟବହାର କରାଯିବ ତାହା ପରେ ବିଚାର ହେବ, ଇତି ।”

ସରକାରଙ୍କର ଏ ବିଜ୍ଞାପନ ନାଗପୁର ଗେଜେଟ୍ ଓ ଅନ୍ୟାନ୍ୟ ଖବରକାଗଜମାନଙ୍କରେ ଏକ ସଙ୍ଗେ ପ୍ରକାଶ ପାଇଲା । ଲେତେ

ବଣ୍ଟାନତେ

ତାହା ପଢ଼ି ଅଶ୍ରୁମୁଖୀ ହୋଇଗଲେ । ଜମ୍ବୁ ତେବେ ଗୋଟାଏ ମଣିଷ—ପଶୁ ପାଲଟି ଯାଇଛି । ଏକଥା ଲୋକେ ଶୁଣି ଜମ୍ବୁକୁ ପୁଣି ଦେଖିବାକୁ ସହସ୍ର ସହସ୍ର ସଂଖ୍ୟାରେ ଧାଇଁଲେ । ଭୟଙ୍କର ଭିଡ଼ ହେଲା । ମାଷ୍ଟର ଲୋକମାନଙ୍କର ଅଗ୍ରହ ଲଙ୍ଘି ନ ପାରି ଦଳ ଦଳ କରି ସେମାନଙ୍କୁ ନେଇ ଜମ୍ବୁକୁ ଦେଖାଇଲେ । ବ୍ୟବସାୟୀ ତ ସେ, ସେ ଏଥିରୁ ମଧ୍ୟ ପଇସା ରୋଜଗାର କରିବା କାମନାରେ ଟିକେଟ ବିକିଲେ । ତହିଁରୁ ଶହ ଶହ ଟଙ୍କା ଲାଭ ହେଲା । ସରକାରଙ୍କ ବିଜ୍ଞାପନ ପଢ଼ି ମାଷ୍ଟର ଓ ଚମ୍ପା ଅଶ୍ରୁମୁଖୀ ହେଲେ ସେତିକି, ଆନନ୍ଦ ହେଲେ ମଧ୍ୟ ସେତିକି । ଚମ୍ପା ଗୋଟାଏ ଅପୂର୍ବ ଆନନ୍ଦରେ ଉଲ୍ଲସିତ ହୋଇ ଜମ୍ବୁକୁ କୁଣ୍ଢେଇ ପକେଇଲା ।



ଭେଷ୍ୱାନଭେ

## —ଅବତରଣୀ—

ଆଗରୁ କୁହାଯାଇଛି ଯେ ଜଣେ ବୈଜ୍ଞାନିକ ଡାକ୍ତର ଜମ୍ବୁର ଗତିବିଧି ଲକ୍ଷ୍ୟ କରି ମନେ କରିଥିଲେ, ଜମ୍ବୁ ଗୋଷ୍ଠୀର ମଣିଷ; ସେ ବଂଶାନୁକ୍ରମେ ଏଣ୍ଡୁ ପାଲଟି ଯାଇଛି । ଅଙ୍କ ସଞ୍ଚାଳକ ଏହି ଉଦ୍ଭାବନ ଦେଖି ତାଙ୍କ ଆନନ୍ଦ କହିଲେ ନ ସରେ । ସେ ଉଦ୍ଭାବିତ ଚିକିତ୍ସା ଦ୍ୱାରା ଜମ୍ବୁକୁ ପୂର୍ବ ଅବସ୍ଥାକୁ ଆଣି ପାରିବେ ବୋଲି ଆଶାକରି ସଞ୍ଚାଳକଙ୍କଠାରୁ ଅନୁମତି ପାଇଥିଲେ । ତେଣୁ ସେ ଅବିଳମ୍ବେ ଲାଟ୍ ସାହେବଙ୍କ ସଙ୍ଗେ ଦେଖାକରି ନିଜ ଅଭିପ୍ରାୟ ଜଣାଇଲେ । ଲାଟ୍ ସାହେବ ତ ଆଗରୁ ଅନୁମତି ଦେଇଥିଲେ । କେବଳ ଜମ୍ବୁ ପଳାଇ ଯିବାରୁ ସେ ପ୍ରସ୍ତାବ ବନ୍ଦ ରହିଥିଲା । ବର୍ତ୍ତମାନ ଲାଟ୍ ସାହେବ ଡାକ୍ତରଙ୍କୁ ପୁଣି ଅନୁମତି ଦେଇ ବହୁତ ଉତ୍ସାହିତ କଲେ ଏବଂ ସ୍ୱୟଂ ସରକାର ମଧ୍ୟ ଏଥିରେ ବିଶେଷ ଆଗ୍ରହାନ୍ୱିତ ବୋଲି ତାଙ୍କୁ ଜଣାଇଲେ । ଡାକ୍ତର ଏଥିରେ ବିଶେଷ ପରିମାଣରେ ଉତ୍ସାହିତ ହୋଇ ଲାଟ୍‌ଙ୍କ ଅନୁମତି ପତ୍ର ଆଣି ସର୍କସ ମାଷ୍ଟରଙ୍କୁ ଦେଖାଇଲେ । ମାଷ୍ଟର ଓ ରମା ଏହା ଶୁଣି ବହୁତ ଆନନ୍ଦିତ ହେଲେ ଏବଂ ଡାକ୍ତର ସେମାନଙ୍କୁ ଯାହା ସାହାଯ୍ୟ ମାଗିବେ ତାହା ସେ ଦୁହେଁ ବିପୁଳ ଆଗ୍ରହରେ ଦେବେ ବୋଲି ଜଣାଇଲେ । ଜମ୍ବୁକୁ କୌଣସିମତେ ଡାକ୍ତରଙ୍କ ବିଜ୍ଞାନ ମନ୍ଦିରକୁ ନେବାକୁ ହେବ । ରମା ତା ସଙ୍ଗେ ନ ଥିଲେ ଜମ୍ବୁ କେବେହେଁ ଯିବନାହିଁ କିମ୍ବା କୌଣସି ମତେ ତାକୁ ଅଯୁକ୍ତ କର ହେବ ନାହିଁ

ଚିକିତ୍ସାଳୟ

ଏଥିପାଇଁ ସ୍ଥିର ହେଲା ଯେ ଜମ୍ବୁର ଶିକ୍ଷା ଶେଷ ହେବା ପର୍ଯ୍ୟନ୍ତ ଚମ୍ପା ଓ କ୍ରିସଙ୍କ ଘରେ ରହିବ । ସେଠାରେ ତାଙ୍କ ପରିବାର ଅଛନ୍ତି । ଚମ୍ପା ସେଠାରେ ନିରାପଦରେ ରହି ପାରିବ । ମାଷ୍ଟର ଏଥିରେ ରାଜି ହେଲେ । ଏହା ସ୍ଥିର କରି ସମସ୍ତ ଆୟୋଜନ କରିବାକୁ ଡାକ୍ତର ନିଜ ଘରକୁ ଗଲେ ।

ଡାକ୍ତର ଦୁଇଦିନ ଭିତରେ ଆୟୋଜନ ଶେଷ କରି ମାଷ୍ଟରଙ୍କୁ ସମ୍ବାଦ ଦେଲେ । ମାଷ୍ଟର ଗୋଟାଏ ଟ୍ରକ୍‌ରେ ଜମ୍ବୁକୁ ପୂରାଇ ଚମ୍ପା ସହ ସନ୍ଧ୍ୟାରେ ଡାକ୍ତରଙ୍କ ଘରକୁ ଗଲେ । ଟ୍ରକ୍‌ରେ ପଶିବା ପାଇଁ ଜମ୍ବୁ ପ୍ରଥମେ ଅମତ ହେଉଥିଲା । ମାତ୍ର ଚମ୍ପା ତା ହାତ ଧରି ଟ୍ରକ୍ ଭିତରକୁ ଯିବାରୁ ଜମ୍ବୁ ଆଉ ବାଧା ଦେଇନାହିଁ । ଜମ୍ବୁ ସହର ଭିତରେ ଗଲାବେଳେ ଅନେକମାନେ ବଜାରମାନ ଓ ରାସ୍ତାର ଭିଡ଼ ଦେଖି ବିଚଳିତ ହୋଇ ପଡ଼ୁଥିଲା । ମାତ୍ର ସୁଖର ବିଷୟ, ସେ କୌଣସି ଗୋଳମାଳ ନ କରି ଖୁବ୍ ଧୀରସ୍ଥିର ରହୁ-ଥିଲା । ଟ୍ରକ୍ ଡାକ୍ତରଙ୍କ ଘରେ ପହଞ୍ଚିବାମାତ୍ରେ ଡାକ୍ତର ଆସି ସେମାନଙ୍କୁ ଅଭ୍ୟର୍ଥନା କଲେ । ଚମ୍ପା ଜମ୍ବୁର ହାତ ଧରି ଟ୍ରକ୍‌ରୁ ଓହ୍ଲାଇଗଲା ଏବଂ ଡାକ୍ତରଙ୍କ ନିର୍ଦ୍ଦିଷ୍ଟ ଘରର ତାକୁ ନେଇ ବସାଇଲା । ମାଷ୍ଟର ହିଁ ଅଳ୍ପ ସାଙ୍ଗରେ ଧରି ସେ ସ୍ଥାନରେ ତାଙ୍କ ସହେ ବିଶ୍ରାମ ନେଲେ ।

ଡାକ୍ତର ତହିଁଆରଦିନ ଅଠଟା ସମୟରେ ମାଷ୍ଟର ଓ ଚମ୍ପାକୁ ସାଙ୍ଗରେ ନେଇ ନିଜର ସୁସଜ୍ଜିତ ମନ୍ଦିର ଦେଖାଇଲେ । ସେ ମନ୍ଦିର ଭିତରେ ବିକୃତ ଶରୀରଧାରୀ ନାନାବିଧ ଯନ୍ତ୍ରପାତି ଅତି ସୁନ୍ଦର-

ଆଲୁଅରେ ସଜ୍ଜିତ ହୋଇଥିଲା ଏବଂ ବିଜୁଳିର ଉଜ୍ଜ୍ୱଳ ଆଲୋକରେ ସେ ଘର ଭାସୁଥିଲା । ଡାକ୍ତରଙ୍କ ଆଦେଶରେ ଚମ୍ପା ଜମ୍ମୁ ନିକଟକୁ ଯାଇ ତା ହାତ ଧରି ଟାଣିଲା ଓ ତାକୁ ବହୁତ ଖୁସି କଲା ଏବଂ ଜମ୍ମୁର ଆନନ୍ଦ ଦେଖି ତା ହାତ ଧରି ପଦାକୁ ନେଇ ଆସିଲା । ଜମ୍ମୁ ଚମ୍ପାର ସଂପୂର୍ଣ୍ଣ ଅଧୀନ, ଚମ୍ପା ଯାହା କରିବାକୁ କହିବ ଜମ୍ମୁ ତାହା ନିଶ୍ଚୟ କରିବ । ସୁତରାଂ ଚମ୍ପା ସଙ୍ଗରେ ଜମ୍ମୁ ବିଜୁଳି ମନ୍ଦିର ଆଡ଼କୁ ଖୁବ୍ ଖୁସିହୋଇ ଚାଲିଲା । ଜମ୍ମୁର ଅଦୃଷ୍ଟ ଭାଗ୍ୟ ଯେ ସେଠାରେ ଭୀଷଣ କିଛି ନ ଥିଲା ଏପରି କୁହେ । ଜମ୍ମୁ ବିଜୁଳି ମନ୍ଦିର ଭିତରେ ପଶି ବଡ଼ ବଡ଼ ଘର ଗୁଡ଼ିଆଡ଼କୁ ଗୁହାଁଲା ଏବଂ ବିଶେଷ ଆଗ୍ରହୀ ହେଲାପରି ଜଣାଗଲା । ସେ ଘରେ ମାଷ୍ଟର ଓ ବୃଦ୍ଧ ଡାକ୍ତର ଆଗରୁ ଥିଲେ । ଜମ୍ମୁ ସେ ଦୁହିଙ୍କୁ ଦେଖି ଆଦୌ ବିରକ୍ତ ହେଲା ନାହିଁ । ଚମ୍ପା ଗୋଟାଏ ଲମ୍ବା ଲୁହାମେଜ ନିକଟରେ ଠିଆହୋଇ ଜମ୍ମୁକୁ ଡାକିବାରୁ ସେ ଗୋଟିଏ ବାଳକପରି ତା ଆଡ଼କୁ ଦୌଡ଼ି-ଗଲା ଏବଂ ଚିକ୍କଣ ମେଜ ଉପରେ ହାତ ମୁହଁ ଘଷି ବଡ଼ ଆନନ୍ଦ ଅନୁଭବ କଲା ।

ଏ ସମୟରେ ଡାକ୍ତର ଓ ମାଷ୍ଟର ମେଜ ନିକଟକୁ ଆସି ଜମ୍ମୁକୁ ମେଜ ଉପରେ ଚିତ୍‌ହୋଇ ଶୋଇବାକୁ କହିଲେ । ମାତ୍ର ଜମ୍ମୁ ସେ କଥା ମାନିଲା ନାହିଁ । ଚମ୍ପା କହିବା ମାତ୍ରେ ସେ ମେଜ ଉପରକୁ ଉଠିଯାଇ ଶୋଇ ପଡ଼ିଲା ଏବଂ ଚମ୍ପାର ହାତ ଧରି ତାହା ଅଇଁସିବାରେ ଲାଗିଲା । ଡାକ୍ତର ଏ ସମୟରେ ଗୋଟାଏ ଓଦା ଗାମ୍ଛା, ବିଜୁଳି ଆଲୁଅ ତା ମୁହଁ ଉପରେ ପକାଇଲେ ଏବଂ

ଛତ୍ରାନଟେ

ଦଶମିନିଟ୍ ପର୍ଯ୍ୟନ୍ତ ଧରିରଖିଲେ । ଏତେବଡ଼ ଚଞ୍ଚଳପ୍ରକୃତି ଜମ୍ବୁ ଚାହୁଁ ଚାହୁଁ ଶାନ୍ତ ହୋଇଗଲା । ଚମ୍ପା ହାତରୁ ତା ହାତ ଅସ୍ତେ ଅସ୍ତେ ଖସି ପଡ଼ିଲା । ସେ କିଛି ସମୟ ବୁହିଁବା ପରେ ଅସ୍ତେ ଅସ୍ତେ ତା ଆଖି ବୁଜିହୋଇ ଆସିଲା ଏବଂ ସେ ଅଚେତ ହୋଇ ପଡ଼ିଗଲା । ତାପରେ ଡାକ୍ତର ସେ ଅଲୋକ ତା ମୁହଁରୁ କାଢ଼ି ନେଇଗଲେ । ଏ ସମୟରେ ତାଙ୍କ ସହକାରୀମାନେ ଗୁପ୍ତ ଘର-ମାନଙ୍କରୁ ବାହାର ଅସି ଗୋଟାଏ ବୃହତ୍ କାଠର ଡ଼ାଙ୍କୁଣୀ ଆଣି ଜମ୍ବୁ ଉପରେ ଘୋଡ଼ାଇ ଦେଲେ । ତାର ମୁଣ୍ଡଠାରୁ ପାଦପର୍ଯ୍ୟନ୍ତ ସର୍ବାଙ୍ଗ ଡାଙ୍କୁଣୀ ଭିତରେ ରହିଗଲା । ସେ ଡାଙ୍କୁଣୀର ଚାରିଆଡ଼େ ତାରମାନ ଖଞ୍ଜାଯାଇ ପ୍ରଚଣ୍ଡ ଘରର ବିଜୁଳି ଯନ୍ତ୍ରମାନଙ୍କ ସଙ୍ଗେ ସଂଯୁକ୍ତ ହୋଇଥିଲା । ଚାହୁଁ ଚାହୁଁ ସବୁ ଜନ୍ତୁ ଏକ ସଙ୍ଗେ ଚାଲୁ-ହେଲେ ଏବଂ ସେମାନଙ୍କର ସମ୍ମିଳିତ ଧ୍ୱନିରେ କାନରେ ଅତଡ଼ା ପଡ଼ିଯାଉଥିଲା । ମାଷ୍ଟର ଓ ଚମ୍ପା ଘରର ଗୋଟାଏ କୋଣରେ ବସି ସମସ୍ତ କାର୍ଯ୍ୟ ଦେଖୁଥିଲେ । ଡାକ୍ତର ସବୁ ଜନ୍ତୁମାନଙ୍କର ତାରସବୁ ଏତେ ଶୀଘ୍ର ସେ ଡାଙ୍କୁଣୀର ଛିଦ୍ରମାନଙ୍କରେ ପୂରାଉଥିଲେ ଓ ବାହାର କରୁଥିଲେ ଯେ ତାଙ୍କ ହାତର ଗତିକୁ ଲକ୍ଷ୍ୟ କରିବା ସହଜ ହେଉ ନଥିଲା । ଦିନ ବାରଟା ପର୍ଯ୍ୟନ୍ତ ଏପରି କାର୍ଯ୍ୟ ଚାଲିଲା ପରେ ଦୁଇଘଣ୍ଟା ପାଇଁ ବନ୍ଦ ରହିଲା ଏବଂ ସମସ୍ତେ ଖାନା ଖାଇବାକୁ ଗଲେ । ଜମ୍ବୁର ଖାନା ବିଷୟ ଚମ୍ପା ପଚାରିବାରୁ ଡାକ୍ତର କହିଲେ, "ମା, ତିନିଦିନ ପର୍ଯ୍ୟନ୍ତ ସେ ମେଜ ଉପରେ ପଡ଼ିରହିବ । ତିନିଦିନ ପରେ ତାର ଜ୍ଞାନ ଫେରି ଆସିଲେ ତାକୁ ଖାନା ଦିଆଯିବ । ଏ ମଧ୍ୟରେ ତାର ଖାନା ଆବଶ୍ୟକ ହେବ ନାହିଁ । ମୁଁ ତା ଦେହରେ

ବୈଦ୍ୟୁତିକ ଶକ୍ତି ପ୍ରସ୍ତୁତ ହେଉଛି । ଏ ଜଳାଧାର ଉପରେ ଯେ କିଛି ନଗାଇଲେ ମଧ୍ୟ ତାର କୌଣସି କ୍ଷତି ହେବ ନାହିଁ ।"

ଦୁଇଟା ସମୟରେ ପୁଣି ଡାକ୍ତର ମାଷ୍ଟର, ଚମ୍ପା ଓ ଅନ୍ୟାନ୍ୟ ସହଯାତ୍ରୀମାନଙ୍କ ସଙ୍ଗେ ବିଜୁଳି ଘରର ଭିତରକୁ ଗଲେ । ଭିତରେ ଟିପ ଦେବା ମାତ୍ରକେ ସମସ୍ତ ଯନ୍ତ୍ର ଏକ ସମୟରେ ଚାଲୁ ହେଲା । ଏପରି ସେ ଚାନ୍ଦଣୀ ଉପରେ ଅଭିନବ ଦୃଶ୍ୟମାନ ଦେଖାଗଲା । ନାଲି ନେଳି ଶାଗୁଆ ପାଟଳ ବାଇଗଣୀ ପ୍ରଭୃତି ବିଭିନ୍ନ ରଙ୍ଗର ଆଲୁଅ ମୁହୂର୍ତ୍ତକେ ଚାନ୍ଦଣୀ ଉପରେ ଜଳଜଳ ହୋଇଥାଏ, ଲିଭିଯାଉଥାଏ । ସେ ଅଲୌକିକ ଉଜ୍ଜ୍ୱଳ ତେଜରେ ସମ୍ପ୍ରଦାୟ ଘର ବାରମ୍ବାର ଆଲୋକିତ ହେଉଥାଏ । ସେତେବେଳେ ଅବା ଭସର୍ ଭସର୍ ଶବ୍ଦ ହୋଇ ଚାନ୍ଦଣୀଟି ମେଘ ସଦୃଶ ଥିବାର ଦେଖାଯାଏ । ଏପରି ଭାବରେ ନାନା ରଙ୍ଗର ଦୃଶ୍ୟ ସୃଷ୍ଟି କରିସାରି ଡାକ୍ତର ଚାରିଟା ବେଳକୁ ଯନ୍ତ୍ର ସବୁ ବନ୍ଦ କଲେ । ସେଠାରୁ ସେମାନେ ଯାଇ ଇଞ୍ଜିନିୟର ସାହେବ ଡାକ୍ତରଙ୍କ ବଗିଚାରେ ହାଓ୍ୱା ଖାଇବାକୁ ଗଲେ ।

ରାତ୍ରି ବିଶ୍ରାମପରେ ପ୍ରାତଃ ସକାଳେ ସେହିପରି ବିଜୁଳି କ୍ରିୟା ଆରମ୍ଭ ହେଲା ଓ ବାରଟା ପର୍ଯ୍ୟନ୍ତ ଚାଲିଲା । ବାରଟା ସମୟରେ ସେଠାରୁ ତିରିଶି ଫୁଟ ଦୂରରେ ଥିବା ଗୋଟାଏ ବଡ଼ ଯନ୍ତ୍ର ନିକଟକୁ ଡାକ୍ତର ମାଷ୍ଟର ଓ ଚମ୍ପାକୁ ଡାକିନେଲେ । ସେଠାରେ ଗୋଟିଏ ଛୋଟ ନଳ ଭଳି ଜାଗାଥିଲା, ତାର ଅଗପଟେ ଖୁବ୍ ଉଜ୍ଜ୍ୱଳ ଅଲୌକିକ ଦେଖାଯାଉଥିଲା । ଡାକ୍ତର ସେ ଜାଗାକୁ କିଛି ସମୟ ଚାହିଁ କଣ ଗୋଟାଏ ପଦାର୍ଥ ଦେଖି ବେଶ ଖୁସି ହେଲେ

ଏବଂ ମାଷ୍ଟରଙ୍କୁ ଡାକି ତାହା ଦେଖାଇଲେ । ମାଷ୍ଟର କିଛି ସମୟ ଦେଖି ସାରି ବୋକା ବନି ଗଲାପରି ଡାକ୍ତରଙ୍କୁ ଚାହିଁ ରହିଲେ । ତାପରେ ଚମ୍ପା ସେ କାଚ ଭିତରକୁ ଅନେକ ସମୟ ପର୍ଯ୍ୟନ୍ତ ଚାହିଁ ଗୋଟାଏ କଣ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଡାକ୍ତର ପଚାରିଲେ, "ମା ! କାଚ ଭିତରେ କଣ ଦେଖିବାକୁ ପାଇଲୁ ?" ଚମ୍ପା କହିଲା, "ମହାଶୟ ! ଆପଣ ଭୌତିକଜ୍ଞାନ ସିନା ଜାଣନ୍ତି । ମୁଁ ଆପଣଙ୍କ ଭୌତିକକାଣ୍ଡ ଦେଖି ଭୟ ଓ ବିସ୍ମୟରେ ବୁଡ଼ି ଯାଉଛି । ମୁଁ ଦେଖିଲି—ଆକାଶ ପୃଥିବୀ ବ୍ୟାପି ଏକ ପ୍ରକାଣ୍ଡ ବାଲିକ୍ଷେତ୍ର ଶୁଭ୍ରଅଟଡ଼ ବିସ୍ତାରିତ ହୋଇ ରହିଛି । ତହିଁରେ ସୂର୍ଯ୍ୟର ଉଜ୍ଜ୍ୱଳ ଆଲୋକ ପଡ଼ି ଶୁଭ୍ରଅଡ଼ ଧାଉଁ ଧାଉଁ ହେଉଛି । ଅନନ୍ତ ନୀଳ ଆକାଶ ଦେହରୁ ବିଦ୍ୟୁତର ସ୍ରୋତ ଅବିରାମ ଗତିରେ ସହସ୍ର ଧାରରେ ଛୁଟି ଆସି ସେହି ଅସୀମ ବାଲି କ୍ଷେତ୍ରକୁ ଉଜ୍ଜ୍ୱଳ ତରଙ୍ଗମାଳାରେ ନିରନ୍ତର ପ୍ଲାବିତ କରୁଛି । ସେହି ସୀମା-ହୀନ ବିରାଟ ବାଲିକ୍ଷେତ୍ର ମଧ୍ୟରେ ଗୋଟିଏ ଅତି ସୁନ୍ଦର ସୁକୁମାର ଯୁବକ ଶୋଇଛି । ତାର ନିଃଶ୍ୱାସ ପ୍ରଶ୍ୱାସରେ ତା ଛାତି ପଡ଼ୁଛି ଉଠୁଛି ଏବଂ ସର୍ବାଙ୍ଗର ଶିରା ପ୍ରଶିରା ଧକ୍ ଧକ୍ ହେଉଛି । ସେ ସୁନ୍ଦର ଯୁବକକୁ ମୁଁ କେବେ ଜୀବନରେ ଦେଖିଥିଲି ପରି ମୋର ମନେ ହେଉନାହିଁ ।" ଚମ୍ପା କଥାରେ ମାଷ୍ଟର ପୂର୍ଣ୍ଣ ଏକମତ ହୋଇ ଡାକ୍ତରଙ୍କୁ ଏହାର କାରଣ ପଚାରିଲେ । ଡାକ୍ତର କହିଲେ, "ସେ ସୁନ୍ଦର ଯୁବକ ଅନ୍ୟ କେହି ନୁହେଁ—ଈଶ୍ୱ । ସେ ବିରାଟ ନୀଳଆକାଶ ଏହି ଡାକିଣୀ ଏବଂ ପ୍ରକାଣ୍ଡ ବାଲିକ୍ଷେତ୍ର ସେ ଦେହ ।" ଏହା ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ

ଢାଙ୍କୁଣୀ ଖୋଲି ଜମ୍ବୁକୁ ଦେଖାଇବାକୁ ଡାକ୍ତରଙ୍କୁ ଅନୁରୋଧ କଲେ । ଡାକ୍ତର ଢଙ୍ଗରେ ରାଜି ନ ହୋଇ କହିଲେ, "ଆଗାମୀ କାଲି ସନ୍ଧ୍ୟା ୫ଟା ସମୟରେ ସେ ଢାଙ୍କୁଣୀ ଖୋଲାଯିବ, ତୁମ୍ଭେମାନେ ଜମ୍ବୁକୁ ସାକ୍ଷାତରେ ଦେଖିବାକୁ ପାଇବ । ତା ଦେହରେ ଶଲ୍ୟକ୍ରିୟା କରିବାକୁ ଅନେକ ବାକି ଅଛି ।" ଏପରି ଭାବରେ ସେଦିନର କାମ ଶେଷହେଲା । ସମସ୍ତେ ଯଥାରୀତି ପାନାହାର କରି ବାହାରକୁ ବୁଲିବାକୁ ଗଲେ ।

## —ଅଣଚାଳିଶି—

ତହିଁଆରଦିନ କାମ ପୁଣି ଉକ୍ତ ମନ୍ଦିରରେ ଆରମ୍ଭ ହେଲା ଓ ଖନନକାର୍ଯ୍ୟ ଲାଗିରହିଲା । ସେଦିନ ଡାକ୍ତର ଓ ତାଙ୍କ ସହକାରୀ-ମାନେ ଅବେଳୀ ବିଶ୍ରାମ ନ ନେଇ ଖନନ ତମାମ କାମରେ ଲାଗିଲେ । ସେଦିନ ଚମ୍ପାର ଉଦ୍‌ବେଗ ଅପାର । ସେ ଜମ୍ମୁକୁ କି ଆକାରରେ ଦେଖିବାକୁ ପାଇବ ତାର ଠିକ ଧାରଣା କରି ପାରୁ ନ ଥିଲା । ଗତ ଦିନ ଖାଲି ଅନେକ ପ୍ରକାର କଳ୍ପନା କରି ତହିଁରେ ବ୍ୟସ୍ତ ହେଉଥିଲା । ଡାକ୍ତର ଜମ୍ମୁକୁ ପାଞ୍ଚଟା ବେଳେ ଦେଖାଇବାକୁ କବୁଲ କରିଥିବାରୁ ଚମ୍ପା ଓ ମାଷ୍ଟର ପାଞ୍ଚଟା ବାଜିବାକୁ ବସିବସି ଚାହିଁ ରହିଥିଲେ । ସମୟ ଯେତେ ଯେତେ ଆଗକୁ ମାଡ଼ି ଚାଲିଥାଏ, ଏମାନଙ୍କର ଛାତି ସେତିକି ଧପ୍ ଧପ୍ ହଉଥାଏ ଏବଂ ଉଦ୍‌ବେଗ ସେହି ପରିମାଣରେ ବଢ଼ୁଥାଏ । ଯେତେବେଳେ ଠିକ ପାଞ୍ଚଟା ସମୟ ହେଲା, ଡାକ୍ତର ସେ ଦୁହିଁଙ୍କୁ ମେଡ଼ିକାଲଟେଣ୍ଟକୁ ଡାକି ନେଇ ଠିଆ କରାଇଲେ । ସହକାରୀମାନେ ସେ ଢାଙ୍କୁଣୀ କାଢ଼ି ଉଠାଇଲା ମାତ୍ରକେ ଦେଖାଗଲା, ଜମ୍ମୁ ଆଉ ତା ଭିତରେ ନାହିଁ, ଗୋଟିଏ ସୁନ୍ଦର ସୁକୁମାର ଯୁବକ ସେଇ ଉପରେ ଗାଢ଼ ନିଦ୍ରାରେ ଶୋଇଛନ୍ତି । ତା ମୁଣ୍ଡ ଉପରର ସୁବର୍ଣ୍ଣ କୁଞ୍ଚିତ କେଶ, ତାର ମନୋହର ଉନ୍ନତ କପାଳ, ସୁକୃଷ୍ଣ ଭ୍ରୂଲତା ଯୁଗଳ,, ଉନ୍ନତ ନାସିକା, ରକ୍ତିମ ଓଷ୍ଠାଧର, ଗୋଲାପୀ କପୋଳ, ଉନ୍ନତ ବିସ୍ତୃତ ବକ୍ଷ, ଶବଳିତ ପେଶୀଳ ବାହୁ ଦ୍ୱୟ, ଚମ୍ପାକଢ଼ ପରି ସୁନ୍ଦର ସବଳିତ ଅଙ୍ଗୁଳିମାନ ଓ

ଯହିଁରେ ଦର୍ପଣ ପରି ଉଜ୍ଜ୍ୱଳ ନଖଗୁଡ଼ିକ, ଲମ୍ବିତ ପେଶୀ ବହୁଳ ଜାନୁଦ୍ୱୟ ଓ ମାଂସଳ ସ୍ୱଚ୍ଛ ପାଦ ଦ୍ୱୟ ସମସ୍ତଙ୍କ ମନ ନୟନ ହରଣ କରି ନେଉଥିଲା । ଚମ୍ପା ଫୁଲ ପରି ଗୌରବର୍ଣ୍ଣ ତାର ସୁନ୍ଦର ଚେହେରା ଦେଖିଲେ କିଏ ମୁଗ୍ଧ ହୋଇ ନ ଯିବ ? ଏ ଦୃଶ୍ୟ ଦେଖି ଚମ୍ପା ଆନନ୍ଦରେ ଉଚ୍ଛ୍ୱସିତ ହୋଇ ଚଟ୍ କରି ଜମ୍ବୁର ସଦ୍ୟସ୍ନାତ ଅଙ୍ଗକୁ ଆଉଁସି ଦେଲା । ମାଷ୍ଟର ପଚାରିଲେ, "ମହାଶୟେ ! ଆମ ଜମ୍ବୁ କୁଆଡ଼େ ଗଲା ? ଇଏ ତ ଆମ ଜମ୍ବୁ ନୁହେ ? ତା ପରିବର୍ତ୍ତେ ଏ ଦେବ କୁମାର କାହୁଁ ଆସି ଏଠାରେ ଶୋଇଲା ? ଆପଣ ନିଶ୍ଚୟ ଭେଲ୍କିବାଜି ଜାଣନ୍ତି । ସେହି ବଳରେ ଜମ୍ବୁକୁ କୁଆଡ଼େ ଉଡ଼ାଇ ନେଇ ତା ଜାଗାରେ ଏହି ସ୍ୱର୍ଗୀୟ ସୁବଳକୁ ଆଣି ଏଠାରେ ଶୁଆଇ ଦେଇଛନ୍ତି । ଧନ୍ୟ ଆପଣଙ୍କ ଶକ୍ତିକୁ ! ଆପଣଙ୍କ ମହିମା ଆମ୍ଭେମାନେ ଗରିବ ଲୋକ ବୁଝି ପାରିବୁ ନାହିଁ ।"

ଡାକ୍ତର ହସି ହସି କହିଲେ, "ମାଷ୍ଟର ! ଆପଣ ଯାହା କହିଲେ ତାହା ଠିକ୍ । ଜମ୍ବୁକୁ ଆପଣଙ୍କ ଦର୍ଶନରେ ଦେଖିବା ଦିନୁ ସେ କେବେହେଁ ପଶୁ ନୁହେଁ ବୋଲି ମୋ ମନରେ ଦୃଢ଼ ଧାରଣା ଜନ୍ମି ଯାଇଥିଲା । ତେଣୁ ତାକୁ ପରୀକ୍ଷା କରି ଦେଖିବି ବୋଲି ବିଚାର ଥିଲି । ତାପରେ ଜମ୍ବୁ ପଳାଇ ଯିବାରୁ ମୋ ମନରେ ଘୋର ନୈରାଶ୍ୟ ମାଡ଼ି ଯାଇଥିଲା । ପୁଣି ଯେତେବେଳେ ଆପଣ ତାକୁ ଧରିଆଣିଲେ, ମୋ ଆଶା ନିଶ୍ଚୟ ସଫଳ ହୋଇବ ବୋଲି ମୋର ଦୃଢ଼ ଧାରଣା ହେଲା । ଏତିକିବେଳେ ହଠାତ୍ ଅନୁସନ୍ଧାନ କମିଟିର

ରିପୋର୍ଟ ବାହାରିଲା । ତହିଁରେ ପରୀକ୍ଷାର ଫଳରେ ଜଣାଇ ଦିଆଗଲା ଯେ ଜିମ୍ମି ମନୁଷ୍ୟ ଅବସ୍ଥାରୁ ପଶୁ ପାଲଟି ଯାଇଛି । ତେଣୁ ମୁଁ ସ୍ଥିର କଲି, ଚେଷ୍ଟା କଲେ ପୁଣି ସେ ମନୁଷ୍ୟ ପାଲଟି ଯାଇପାରେ । ସୁତରାଂ ଏ ଅଭିଯୋଜନ ଆରମ୍ଭ ହୋଇ ପ୍ରଭୁଙ୍କ ଦୟାରୁ ଆଜି ଶେଷ ହେଲା । ଜିମ୍ମି ଯେ ପ୍ରକୃତ ମନୁଷ୍ୟ ତାହା ପ୍ରମାଣିତ ହେଲା । ଜିମ୍ମି ଜଣେ ସଜ୍ଜନ, ଏଥିରେ ସନ୍ଦେହ ନାହିଁ । ମୋର ସାରା ଜୀବନର ଶିକ୍ଷା ଓ ଅଧ୍ୟବସାୟ ଆଜି ସଫଳ ହେଲା । ଏହାହିଁ ମୋର ଆନନ୍ଦ, ଏହାହିଁ ମୋର ପୁରସ୍କାର । ଜିମ୍ମି ଜୀବନରେ କିଛି ଉନ୍ନତି କରି ପାରିଲେ ମୋର ସମସ୍ତ ଶ୍ରମ ସଫଳ ହେବ ।”

ଡାକ୍ତର ଏହା କହୁ ଗୋଟିଏ ଶୀତଳ ଅଶ୍ରୁ ବିନ୍ଦୁ ଜିମ୍ମି ଉପରେ ଝର ଝର ଝରିଗଲେ । ପାଞ୍ଚ ସାତ ମିନିଟ ଏପରି କଟିବାପରେ ଜିମ୍ମି ଆଖି ମେଲାଇ ଚାହିଁଲା ଏବଂ ମୁହଁ ବୁଲାଇ ସମସ୍ତଙ୍କ ଭିତରେ ରମାକୁ ଦେଖି ‘ରମା ! ମାମା !’ ବୋଲି କହି ହସିଦେଲା । ତାପରେ ମେଜରୁ ତଳକୁ ଓହ୍ଲାଇ ପଡ଼ି ରମାର ହାତ ନିଜ ମୁଣ୍ଡ ଓ ଗାଲରେ ଲଗାଇ ବହୁତ ଆନନ୍ଦ ଉପଭୋଗ କଲା । ଜିମ୍ମିର ମୁଣ୍ଡ ଓ କପୋଳ ସ୍ପର୍ଶରେ ହାତବୁଲାଇ ମଧୁର ସ୍ପର୍ଶ କରିବାକୁ ରମାର ପ୍ରାଣ ଯେ ଛଟପଟ ହେଉ ନ ଥିଲା ଏମନ୍ତ ନୁହେଁ । ଜିମ୍ମି ନିଜ ହାତ ଗୋଡ଼ ମୁଣ୍ଡ ବୁଦିଅଡ଼କୁ ଘନ ଘନ ଚାହିଁଲା ଏବଂ ନିଜର ପରି-ବର୍ତ୍ତିତ ଦେହେସ ଦେଖି ମନରେ ଭଣି ଯେ ବିଚ୍ଛୁରୁ ଥିଲା ତା କହି ହେବନାହିଁ । ସେ ନିଷ୍ଠୁର ବିଦ୍ୟୁତରେ ଭୁଲି ଯାଇଥିଲା । ସେ ଆଜି ପଶୁ ନୁହେଁ; ସେ ମନୁଷ୍ୟ, ସେ ମହାବଣର ଜିମ୍ମି ନୁହେଁ; ସେ ସୁସଭ୍ୟ ମାନବ ସମାଜର ଜିମ୍ମି ।

---

ଶହେ ଟଙ୍କା

## —ତରଣୀ—

ଡାକ୍ତର ଜମ୍ମୁକୁ ମେଜ ଉପରେ ବସିବାକୁ ଆଦେଶ ଦେଲେ । ଆଶ୍ଚର୍ଯ୍ୟର ବିଷୟ, ଜମ୍ମୁ ଚମ୍ପାର ହାତ ଛାଡ଼ିଦେଇ ଗୋଟିଏ ବାଘ ଛୁଆ ପରି ମେଜଉପରେ ଯାଇ ବସି ପଡ଼ିଲା ଏବଂ ଚମ୍ପା ଅଡ଼କୁ ଚାହିଁ ଚାହିଁ ମୃଦୁ ସ୍ମିତ ହାସ୍ୟ କଲା । ଚମ୍ପା ଜମ୍ମୁର ଏପରି ସ୍ୱଭାବ ପରିବର୍ତ୍ତନ ଦେଖି ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲା ଏବଂ ଡାକ୍ତରଙ୍କ ମହିମା ଦେଖି ମନେ ମନେ ତାଙ୍କୁ ଶତ ଶତ ପ୍ରଶଂସା କଲା । ଡାକ୍ତର ଜମ୍ମୁର ହାତଧରି ମର୍ଦ୍ଦନ କଲେ ଏବଂ ମାଷ୍ଟର ଓ ଚମ୍ପାର କରମର୍ଦ୍ଦନ କରିବାକୁ କହିଲେ । ଜମ୍ମୁ ହସି ହସି ସେହିପରି କଲା । ଚମ୍ପା ଜମ୍ମୁର ସେ ସ୍ମିତ ହାସ୍ୟ ଖଣ୍ଡିକ ଦେଖି ଏକବାରେ ଆତ୍ମହରା ହୋଇଗଲା ।

ତା ପରେ ସମସ୍ତେ ଜମ୍ମୁକୁ ସାଙ୍ଗରେ ଧରି ଗାଧୁଆଘରକୁ ଗଲେ । ପରିଚାରିକାମାନେ ତା ଦେହରେ ସୁବାସିତ ତୈଳ ମର୍ଦ୍ଦନ କରି ଖୁବ୍ ସୁବାସିତ ସାବୁନରେ ତା ଦେହ ଘଷି ଗୋଲାପ ଅତର-ମିଶା ପାଣିରେ ତାକୁ ସୁନ୍ଦରରୂପେ ସ୍ନାନ କରାଇ ଦେଲେ । ସ୍ନାନ ପରେ ତାର ଶାରୀରିକ ଶୋଭା ଓ ମାନସିକ ଶାନ୍ତି ବହୁଗୁଣରେ ବଢ଼ିଗଲା । ଚମ୍ପା ଅପ୍ସରାପରି ପରମାସୁନ୍ଦରୀ ଯୁବତୀ ହେଲେ ମଧ୍ୟ ଜମ୍ମୁର ଶୋଭା ଦେଖି ତା ନିକଟରେ ନିଜକୁ ବହୁତ ଛୋଟ ମନେ କଲା । ତା ପରେ ସମସ୍ତେ ଜଳଖିଆ ଖାଇଲେ । ଡାକ୍ତରଙ୍କ ଶିକ୍ଷା

ଶହେ ଗୃହ

ଫଳରେ ଜମ୍ମୁ ମଧ୍ୟ ସେହିପରି ଜଳଖିଆ ଖାଇଲା, ମାତ୍ର ସେଥିପାଇଁ ଚମ୍ପା ତାକୁ ଅନେକ ସାହାଯ୍ୟ କରିଥିଲା । ଡାକ୍ତର ଜମ୍ମୁ ପାଇଁ ସୁନ୍ଦର ପୋଷାକ ତିଆରି କରି ରଖିଥିଲେ, ତାହାଁରେ ତା ଦେହକୁ ଭୂଷିତ କରି ଦେଲେ । ଏଥିରେ ମଧ୍ୟ ଜମ୍ମୁକୁ ଚମ୍ପା ଓ ଡାକ୍ତର ବହୁତ ସାହାଯ୍ୟ କଲେ । ତା ପରେ ଗୃହକର୍ତ୍ତାଙ୍କ ବଗିରେ ବସି ସହରର ବିଭିନ୍ନ ସ୍ଥାନରେ ବହୁତ ବୁଲିଲେ । ସେଦିନ ଜମ୍ମୁର ଓଜନ ସିଦ୍ଧ ନ ପାରି କେଜିର କେତେକ ଅଂଶ କମିଯାଇଥିଲା ଏବଂ ଦୁଇଟା ଘୋଡ଼ା ଘରଚଳେଇ ଗୃହଟା ଘୋଡ଼ା ସେଦିନ ଯୋଗୁଁ ହୋଇ ଅତି କଷ୍ଟରେ ଟାଣିଥିଲେ ।

ଅଠଟା ବେଳକୁ ଫେରିଆସି ସମସ୍ତେ ପୋଷାକ ବଦଳାଇଲେ ଏବଂ ଜମ୍ମୁକୁ ମଧ୍ୟ ସେହିପରି ବଦଳେଇବାରେ ସାହାଯ୍ୟ କଲେ । ଏହି ଅଳ୍ପ ସମୟ ଭିତରେ ଡାକ୍ତରଙ୍କ ଶିକ୍ଷା ବଳରେ ଜମ୍ମୁ ମାଷ୍ଟରଙ୍କୁ ବାବା ଓ ଚମ୍ପାକୁ ସମ୍ପାରୂପେ ଚମ୍ପା ବୋଲି ଡାକୁଥିଲା । ଚମ୍ପାର କହିବାମତେ—ଡାକ୍ତରଙ୍କୁ ସେହିପରି 'ବାବା' ବୋଲି ଡାକିବାକୁ ଶିଖିଲା । ରାତିରେ ଡାକ୍ତର ଅନେକପ୍ରକାର ଖାଦ୍ୟଦ୍ରବ୍ୟ ଯୋଗାଡ଼ କରି ସମସ୍ତଙ୍କୁ ଖୁଆଇଲେ । ଜମ୍ମୁ ସେଦିନ ନୂଆ ହୋଇ ପଲଉ, ମାଂସ ତରକାରି, କୁକୁମା, ଅମ୍ଳେଟ, ରୋଷ୍ଟ, ପାଇଁରୁଟିର ଟୋଷ୍ଟ, ପାୟସ, ଲୁଚି, ନାନାବିଧ ତରକାରି, ଭଜା, ପିଠା ପ୍ରଭୃତି ବଡ଼ ଶାନ୍ତ ବଡ଼ ଆନନ୍ଦରେ ପେଟ ଭରି ଖାଇଲା । ମାଷ୍ଟର, ଡାକ୍ତର ଓ ଚମ୍ପା ମିଶି ଯେତିକି ପରିମାଣ ଖାନା ଖାଇଲେ ଜମ୍ମୁ ଏକା ତାର ପାଞ୍ଚଗୁଣ ଖାଇଲା । ଖାଇବା ବାଟରେ ଚମ୍ପା ତାକୁ ବହୁତ

ସାହାଯ୍ୟ କରୁଥିବ । ଖାଇବା ଶେଷରେ ଗୋଟିଏ ସୁନ୍ଦର ପଲଙ୍କରେ ମନୋରମ ଶେଯ ଉପରେ ଜମ୍ମୁକୁ ଶୁଆଇ ଦିଆଗଲା ଏବଂ ତା ପରେ ମଶାରି ଟାଣି ଦିଆଗଲା । ଡାକ୍ତର ଓ ଚମ୍ପାଙ୍କ କଥାନୁସାରେ ଜମ୍ମୁ ତା ଉପରେ ହସି ହସି ଶୋଇଲା ଏବଂ 'ଚମ୍ପା' 'ବାବା' ଏପରି ବାରମ୍ବାର କହୁ କହୁ ଅଳ୍ପ ସମୟ ପରେ ଗାଢ଼ ନିଦ୍ରାରେ ଶୋଇପଡ଼ିଲା ।

ସକାଳ ସମୟରେ ଚମ୍ପା ଉଠି ଆଗଯାଇ ଜମ୍ମୁ ଶୋଇଥିବା ଘରେ ପଶିଥିଲା ଏବଂ ମଶାରି ଖୋଲି ଦେଲା ମାତ୍ରେକେ ଜମ୍ମୁ ଆଖି ଖୋଲି ଚମ୍ପାକୁ ଗୁହାଁ ହସି ଦେଲା । ଚମ୍ପା କହିଲା, "ଜମ୍ମୁ ! ଆସ, ନିତ୍ୟକର୍ମ ଶେଷକର" । ଜମ୍ମୁ ଚଟ୍ କରି ଶେଯରୁ ଉଠି ତଳକୁ ଡେଇଁ ପଡ଼ିଲା ଏବଂ ଚମ୍ପାକୁ କୁଣ୍ଢାଇ ଘଣ୍ଟାଏ କାଳ ଖୁସିରେ କାନ୍ଦି ରହିଲା । ଏ ଘଟଣାରେ ଉଭୟେ ବିପୁଳ ଆନନ୍ଦ-ଉପଭୋଗ କଲେ । ଚମ୍ପାର ଶିକ୍ଷା ଅନୁସାରେ ଜମ୍ମୁ ପାଇଖାନାରେ ବସିଲା, ଶୌଚ ହେଲା, ବଡ଼ କଷ୍ଟରେ ଦାନ୍ତ ମଧ୍ୟ ଘଷିଲା, ଏବଂ ଶେଷରେ ଭଲ ପୋଷାକ ପିନ୍ଧି ଚମ୍ପାର ହାତ ଧରି ତଳ ମହଲକୁ ଗଲା । ସେଠାରେ ମାଷ୍ଟର ଓ ଡାକ୍ତର ବସି ଗପ୍ ସପ୍ କରୁଥିଲେ । ଜମ୍ମୁ ସେଠାରେ ଉଭୟଙ୍କୁ ନମସ୍କାର କଲା । ତାହା ତାକୁ ଚମ୍ପା ବହୁ ପରିଶ୍ରମରେ ଶିଖେଇ ଦେଇଥିଲା । ଜମ୍ମୁକୁ ଦେଖି ଡାକ୍ତର ଓ ମାଷ୍ଟର ବଡ଼ ଆନନ୍ଦରେ କୁଣ୍ଢେଇ ପକାଇଲେ । ଜମ୍ମୁ ସେଥିରେ ଡରିଲା ନାହିଁ; ବରଂ ଅଧିକ ଆନନ୍ଦର ଭାବ ଦେଖାଇଲା ।

ସେ ଦିନ ଡାକ୍ତର ଓ ଚମ୍ପା ଜମ୍ମୁକୁ ଅନେକ ଶିକ୍ଷା ଦେଲେ । ସନ୍ଧ୍ୟା ସମୟକୁ ଦେଖାଗଲା—ଜମ୍ମୁ ଘରେ ବ୍ୟବହାର କଲା ଭଳି

## ଟମ୍ମୁ

ଅନେକ କଥା କହିଲା, ଟେନିସ୍, ବ୍ୟାଡ୍ମିଣ୍ଟନ୍ ଓ ଭଲି ବଲ୍ ପ୍ରଭୃତି ଖେଳ ମଧ୍ୟ ଖେଳିଲା । ନିଜର ପୋଷାକ ନିଜେ ବାଛି ଯଥା ସମୟରେ ପିନ୍ଧିଲା ଏବଂ ଖାଇବା ପିଇବାରେ ଆଉ କାହାର ସାହାଯ୍ୟ ଆବଶ୍ୟକ କଲା ନାହିଁ । ତହିଁ ଅବଧାନ ଅଦ୍ଭୁତ କେତେ ଗୁଣ ଜଳନ୍ତ ଦେଖାଗଲା । ଏପରି ଭାବରେ କ୍ରମେ କ୍ରମେ ଏକ ସପ୍ତାହ ଭିତରେ ସାଧାରଣ ଅଗୃଚ ବ୍ୟବହାରରେ ସେ ଏତେ ନିପୁଣ ହୋଇ ଉଠିଲା ଯେ ତାକୁ ଦେଖି ସକଳ ହେଲେ, ଏପରି ଯେପରି ସେ ଚିରଦିନ ସେହି ପରିବାର ଭିତରେ ରହୁଛି ଏବଂ କେବେହେଁ ତାର କୌଣସି ପରିବର୍ତ୍ତନ ହୋଇନାହିଁ । ସେ ଏବେ ସ୍ୱଚ୍ଛନ୍ଦରେ ହୃଦୟ ଖୋଲି କଥାବାର୍ତ୍ତା କଲା, ଡାକ୍ତର ବାବାଙ୍କୁ ନିଜର ସୁବିଧା ଅସୁବିଧା ଭଲ ମନ୍ଦ ସବୁ କଥା କହିଲା ଏବଂ ମାଷ୍ଟର ବାବାଙ୍କ କୋଳରେ ତାଙ୍କ ସ୍ନେହର ପୁଅ ଭଳି ବସି ପଢ଼ୁଥିଲା । ତାର ଅଦ୍ଭୁତ ପରିବର୍ତ୍ତନ, ବିଚାର ସ୍ମରଣ ଶକ୍ତି ଓ ଅଲୌକିକ ଭଦ୍ରତା ଦେଖି ସମସ୍ତେ ବିସ୍ମିତ ହୋଇଗଲେ ।

## — ଏକତିରିଶି —

ଜମ୍ମୁର ଏ ସମସ୍ତ ଘଟଣା ବାହାରେ ଖୁବ୍ ଗୁପ୍ତ ରଖାଯାଇ ଥିଲା । ଡାକ୍ତରଙ୍କ ପରିବାର, ଗୁଣ୍ଡର ବାବର ଓ ସହକାରୀମାନଙ୍କ ଭିତରେ ଏ କଥା ଅବଦ୍ଧ ଥିଲା । ଜମ୍ମୁର ସମସ୍ତ ବ୍ୟବହାର ଶିକ୍ଷା ଶେଷ ହେବା ପରେ ଡାକ୍ତର ଓ ମାଷ୍ଟର ଯାଇ କଟ୍ ସାହେବଙ୍କୁ ଆରମ୍ଭରୁ ଶେଷପର୍ଯ୍ୟନ୍ତ ସମସ୍ତ ଘଟଣା ଗୋଟି ଗୋଟି କରି ଜଣାଇଲେ । କଟ୍ ତାହା ଶୁଣି ଏତେ ଆଶ୍ଚର୍ଯ୍ୟ ହୋଇଗଲେ ଯେ ଏକଥା ସହଜରେ ବିଶ୍ୱାସ କରିବାକୁ ତାଙ୍କର ମନ ବଳିଲା ନାହିଁ । ମାତ୍ର ଭାରତର ବିଖ୍ୟାତ ଡାକ୍ତର ଓ ଅଜୀବ ସମ୍ମାନିତ ସର୍କସ-ମାଷ୍ଟର ଏକଥା କହୁଥିବାରୁ ଅବିଶ୍ୱାସର ଯୋଗ୍ୟ ନୁହେ ବୋଲି ତାହା ଆଦରରେ ଗ୍ରହଣ କଲେ । ଜମ୍ମୁକୁ ବର୍ତ୍ତମାନ ଅବସ୍ଥାରେ ଦେଖିବାକୁ ତାଙ୍କର ବଡ଼ ଆଗ୍ରହ ଜନ୍ମିଲା । ତହୁଁ ସେ ତହିଁ ଆର ଦିନ ଡାକ୍ତରଙ୍କ ଘରଠାକୁ ଯାଇ ଜମ୍ମୁକୁ ଦେଖିଲେ । ଗୋଟାଏ ବିକଟ ଭାଲୁପରି ଦେଖା ଯାଉଥିବା ଜମ୍ମୁକୁ ସେ ମାସକ ତଳେ ପିଞ୍ଜରା ଭିତରେ ଦେଖିଥିଲେ । ଆଜି ସେ ଦେଖିଲେ ଗୋଟିଏ ଅତି କମନୀୟ ରୂପବାନ୍ ଯୁବକ ସୁନ୍ଦର ମୂଲ୍ୟବାନ୍ ପୋଷାକ ପିନ୍ଧି ତାଙ୍କ ଆଗରେ ଠିଆ ହୋଇଛି ଏବଂ ଅଶେଷ ଭଦ୍ର-ଭାବରେ ତାଙ୍କୁ ପ୍ରଣାମ କରି ଭଲ ଭାବରେ କଥାବାର୍ତ୍ତା କରୁଛି । ଏଥିରେ ଯେ କେହି କେବଳ ସନ୍ଦେହ ହେବାର କଥା ।

ଯାହା ହେଉ ଜମ୍ମୁ ସାଙ୍ଗରେ କିଛି ସମୟ କଥା ବାର୍ତ୍ତା କରି ସାର କଟ୍ ସାହେବ ବଙ୍ଗଳା ମନ୍ଦିର ଦେଖିବାକୁ ଗଲେ । ଡାକ୍ତର

ଏ ଉପାୟରେ ଜିମ୍ମିକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଶିକ୍ଷା ଦେଇଥିଲେ, ତାର ପ୍ରତ୍ୟେକ ଅଭ୍ୟାସର ଫଟୋ ଉଠାଇଥିଲେ । ସେ ତାହାସବୁ ଯନ୍ତ୍ର ସାହାଯ୍ୟରେ ଚଳଚିତ୍ର ଆକାରରେ ଲଡ଼୍ ଦମ୍ପତି ଓ ତାଙ୍କ ମନ୍ତ୍ରୀ-ମାନଙ୍କୁ ଦେଖାଇ ମୁଗ୍ଧ କରିଦେଲେ । ଜିମ୍ମି ବିଜୁଳି ମନ୍ଦିରରେ ପଶି ମେଜ ନିକଟକୁ ଯାଇ ତହିଁରେ ଶୋଇବାଠାରୁ ଆରମ୍ଭକରି ବିଜୁଳି କ୍ରିୟା ପ୍ରଭାବରେ ଚନ୍ଦନ ଭିତରେ ତାର ଦଣ୍ଡାକୁ ଘଣ୍ଟା କାପରି ପରିବର୍ତ୍ତନ ହେଲା ଏବଂ ଶେଷରେ ସେ କିପରି ମୁକ୍ତ ହୋଇ ଚମ୍ପାସହ ବିଜୁଳି ମନ୍ଦିର ଭିତରୁ ବାହାରି ଆସିଲା, ଇତ୍ୟାଦି ସମସ୍ତ ଚଳଚିତ୍ରରେ ପ୍ରଦର୍ଶିତହେଲା । ଲଡ଼୍ ଦମ୍ପତି ଡାକ୍ତରଙ୍କ ସହ କରମର୍ଦ୍ଦନ କରି ତାଙ୍କ ଉପରେ ପ୍ରଶଂସା ଢାଳି ଦେଲେ । ମନ୍ତ୍ରୀମାନେ ମଧ୍ୟ ଡାକ୍ତରଙ୍କୁ ଆଲିଙ୍ଗନ କରି ପ୍ରଶଂସା ଓ ସମ୍ମାନ ତାଙ୍କ ଉପରେ ଅଜାଡ଼ି ଦେଲେ । ଲଡ଼୍ ସାହେବ ସେଠାରେ ବଡ଼ଲାଟଙ୍କ ପୁରସ୍କାର ପଚାଶହଜାର ଟଙ୍କା ଏବଂ ନିଜର ପୁରସ୍କାର ପଚାଶହଜାର ଟଙ୍କା ଏପରି ଏକଲକ୍ଷ ଟଙ୍କା ଡାକ୍ତରଙ୍କୁ ଦେଲେ । ଡକ୍ତର ଭକ୍ତିଭାବରେ ତାହା ଗ୍ରହଣ କରି ଲଡ଼୍ ଦମ୍ପତି ଓ ତାଙ୍କ ମନ୍ତ୍ରୀମଣ୍ଡଳଙ୍କୁ କୃତଜ୍ଞତା ଜଣାଇଲେ ଏବଂ ଲଡ଼୍‌ଙ୍କ ଜରିଆରେ ବଡ଼ଲାଟଙ୍କୁ ମଧ୍ୟ ତାହା ଜଣାଇ ଦେଲେ ।

ଲଡ଼୍ ଦମ୍ପତି ଜିମ୍ମି ଓ ଚମ୍ପାକୁ ବହୁତ ଆଶୀର୍ବାଦ କଲେ । ଜିମ୍ମି ଓ ଚମ୍ପା ପରସ୍ପରର ଉପଯୁକ୍ତ ସାଥି ବୋଲି ତାଙ୍କର ମତ ହେବାରୁ ସେ ଦୁହିଁଙ୍କୁ ବିବାହ ଦେବାକୁ ସେମାନେ ମାଷ୍ଟରଙ୍କୁ ଅନୁରୋଧ କଲେ । ମାଷ୍ଟର ଖୁବ୍ ଆଗ୍ରହରେ ତହିଁରେ ରାଜି ହେବାରୁ ଲଡ଼୍ ଦମ୍ପତି ଜିମ୍ମି ଓ ଚମ୍ପାଙ୍କ ହାତ ଏକାଠେଇ କରି

ଦେବତା ଆଶୀର୍ବାଦ କଲେ । ଲକ୍ଷ୍ମୀ ବହୁମୂଲ୍ୟ ହାର ଦୁଇଟି ସେଥିଭିତରୁ ତାହାର ଭଲ ଗୋଟିଏ ଜମ୍ବୁ ବେକରେ ଓ ଅପରଟି ଚମ୍ପା ବେକରେ ଗଳାଇ ଦେବାବେଳେ ସମସ୍ତଙ୍କ କଣ୍ଠରୁ ଜୟ ଆନନ୍ଦର ଧ୍ୱନି ଉଠି ଗୃହଅଙ୍ଗ ଝଙ୍କୁଳାଇ ଦେଲା । ବିବାହ ଉତ୍ସବ ଶେଷ କରି ଲକ୍ଷ୍ମୀ ଦମ୍ପତି ସଦଳ ବଳରେ ଫେରିଗଲେ । ଏପରି ଏକ ଅକଳ୍ପିତ ଘଟଣାରେ ମାଷ୍ଟର ଓ ଡାକ୍ତର ମୁଗ୍ଧ ହୋଇଗଲେ ।

ତା ପରଦିନ ସରକାରୀ ଗେଜେଟ୍ ବାହାରିଲା । ତହିଁରେ ଜମ୍ବୁର ମୁକ୍ତି, ଅଦ୍ଭୁତ ପରିବର୍ତ୍ତନ, ଡାକ୍ତରଙ୍କ ପୁରସ୍କାର ଓ ବିବାହ ସମ୍ବାଦ ବିଶଦଭାବରେ ପ୍ରକାଶିତ ହୋଇଥିଲା । ତାହା ଦେଖି ଶିକ୍ଷିତ ମହଲ ଚମକି ପଡ଼ିଲେ । ଖବରକାଗଜବାଲା ଜମ୍ବୁକୁ ଦେଖିବାକୁ ଛୁଟି ଆସିଲେ । ସେ ଦିନ ବାରଟା ବେଳେ ଜମ୍ବୁର ସମସ୍ତ ହାଲ୍ ଚାଲ ଖବରକାଗଜମାନଙ୍କରେ ବାହାରିପଡ଼ିଲା । ଲୋକସାଧାରଣ ତାହା ପଢ଼ି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ସହସ୍ର ସହସ୍ର ଲୋକ ଜମ୍ବୁକୁ ଦେଖିବାକୁ ଡାକ୍ତରଙ୍କ ଘରଠାକୁ ଧାଇଁ ଆସିଲେ । ଅଗଣିତ ନର ମୁଣ୍ଡରେ ଡାକ୍ତରଙ୍କ ବିସ୍ତୃତ ଅଗଣା ପୂରିଗଲା । ଜମ୍ବୁ ଓ ଚମ୍ପା କୋଠା ଉପରେ ଠିଆହୋଇ ଲୋକ-ମାନଙ୍କୁ ଦେଖାଦେଲେ । ବିରାଟ ପଶୁ ଜମ୍ବୁ ଏଇ ବୋଲି ଲୋକେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବହୁତ ଦୂରରୁ ଲୋକମାନେ ଜମ୍ବୁକୁ ଦେଖିବାକୁ ଧାଇଁଲେ । ରେଲଚଢ଼ି, ଗାଡ଼ିରେ ବସି, ଚାଲି ଚାଲି ଅନେକ ଲୋକ ଆସିଲେ । ଖବରକାଗଜ ମାନଙ୍କରେ ଜମ୍ବୁର ପୁରୁଣା ଓ ନୂଆ ଫଟୋ ବଡ଼ ବଡ଼ ଆକାରରେ ବାହାରିଲା ଏବଂ ଜମ୍ବୁ ଉପରେ ନୂଆ ରୂପ ପାଇଲା, ତାର ସମସ୍ତ ବିବରଣ ସହିତ ଲକ୍ଷ୍

ଯେପରି ତାଙ୍କୁ ରମ୍ଭାସଙ୍ଗେ ବିବାହ କରାଇ ଦେଲେ, ତାହାମଧ୍ୟ ବଡ଼ ବଡ଼ ଅକ୍ଷରରେ ପ୍ରକାଶିତ ହେଲା । ଖବର କାଗଜ ଏଥିପାଇଁ ଏତେ ଖଙ୍କର ହେଲା ଯେ ଦିନରେ ତିନିଥର ଛପାହେଲେ ମଧ୍ୟ ତଥାପି ତାର ଅଭାବ ପଡ଼ିଲା । ଲୋକଙ୍କ ଆଗ୍ରହ କହିଲେ ନ ସରେ । ନାଗପୁର ସହର ଭିତରେ ଲୋକଭିଡ଼ ଏତେ ହେଲା ଯେ ସେମାନଙ୍କ ପାଇଁ ଶହ ଶହ ହୋଟେଲ୍, ଶହଶହ ଚାଅ ଦୋକାନ, ଶହ ଶହ ଭଡ଼ାଘର ଏବଂ ଏହିପରି ଶହ ଶହ ବଜାର କାରବାର ଖୋଲିଗଲା ।

ଡାକ୍ତରଙ୍କ ପ୍ରଶଂସାରେ ଗଗନ ପବନ କମ୍ପି ଉଠିଲା । ସହର ଭିତରେ ଗୋଟାଏ ବିରାଟ ସଭା ହୋଇ ତାଙ୍କୁ ନଗରବାସୀଙ୍କ ପକ୍ଷରୁ ଅଭିନନ୍ଦନ ଦିଆଗଲା । ଅନେକ ଲୋକ ସେଠାରେ ଡାକ୍ତରଙ୍କୁ ଶହ ଶହ ହଜାର ହଜାର ଟଙ୍କା ଉପହାର ଦେଲେ । ଅନେକ ଲୋକ ସୁନା ରୁପାର ହାର, ବାସନ, ଅତରଦାନି, କପ୍, ଘଣ୍ଟା ଓ ଅନ୍ୟ ନାନାବିଧ ଜିନିଷ ଉପହାର ଦେଲେ । ସେଦିନ ସେ ଟଙ୍କା ଓ ଜିନିଷ ମିଶି ଏକ ଲକ୍ଷଟଙ୍କା ଲାଭ କଲେ । ଡାକ୍ତର ତାହା ସବୁ ବିଜୁଳି ମନ୍ଦିର ଉନ୍ନତିରେ ବ୍ୟୟ କରିବେ ବୋଲି ସମସ୍ତଙ୍କୁ ଜଣାଇ ଦେଲେ ।

ଜମ୍ବୁ ଓ ରମ୍ଭାଙ୍କ ବିବାହ ଭେଟି ଚାରିଆଡ଼ୁ ଜୁଟି ଆସିଲା । କେତେ ସୁନାରୁପାର ଟିସେଟ୍, ଅତରଦାନି, ଗୋଲାପପାସ, କେତେ ଫୁଲ ତୋଡ଼ା ଓ ମାଳ, କେତେ ଝୁଡ଼ିଭର୍ତ୍ତି ନାନାବିଧଫଳ, କେତେ ସୁନାହାର, ମୁଦି ଓ ଲକେଟଥିବା ଚେନ୍, କେତେ ସୁନା ରୁପାର ଘଣ୍ଟା ଆସି ଜମିଗଲା, ତାର ସୀମାନାହିଁ । ଏ ସବୁ ଜିନିଷରେ

## ଜମ୍ବୁ

ଡାକ୍ତରଙ୍କ ଘର ପୂରିଗଲା । ଜମ୍ବୁ ଓ ଚମ୍ପା ଆନନ୍ଦରେ ଉଲ୍ଲସି ହୋଇ ବିବାହ ଅଟମାଡରେ ଗୃହଅଙ୍ଗେ ଘୂରି ବୁଲୁଥିଲେ । ବୁଢ଼ା ଡାକ୍ତର ଓ ଡାକ୍ତରାଣୀଙ୍କ ଆନନ୍ଦ କହିଲେ ନ ସରେ । ସେ ଦୁହେଁ ଏ ଉତ୍ସବ ପାଇଁ ହଜାର ହଜାର ଟଙ୍କା ଢାଳିଦେଲେ । ଭୋଜି, ନାଚ ତାମସା ଓ ଅତସବାଜିର ସାତଦିନ ଯାଏ ଲାଗିରହିଲା । ନାଗପୁର ସହରବାସୀ, ସର୍ଭିସ କର୍ମଚାରୀମାନେ ଓ ଓକିଲ ମହରର ସହକାରୀମାନେ ସମସ୍ତେ ପ୍ରାଣ ଭରି ଏ ଉତ୍ସବରେ ଯୋଗଦେଲେ । ମାତ୍ର ଦୁଃଖ ଓ ନୈରାଶ୍ୟରେ ବୁଡ଼ିଗଲା କେବଳ ଡାକ୍ତରଙ୍କ ଏକମାତ୍ର ଯୁବକ ପୁତ୍ର ଅମିତାଭ । ଚମ୍ପା ତାଙ୍କ ଘରକୁ ଆସିଲାଦିନୁ ସେ ତା ରୂପରେ ମୁଗ୍ଧହୋଇ ତାକୁ ବିବାହ କରିବାକୁ ଏକାନ୍ତ ବାସନା କରିଥିଲା । ମାତ୍ର ସେ ଜମ୍ବୁ ସଙ୍ଗେ ବିବାହ କରିବାରୁ ତା ମନ ଘୋର ନୈରାଶ୍ୟରେ ବୁଡ଼ିଗଲା । ସେ ଗୋଟିଏ ଉଦାସୀନ ସନ୍ନ୍ୟାସୀ ପରି ରହି ଏ ଉତ୍ସବର କୌଣସି ଅଂଶ ଉପଭୋଗ କରି ପାରିଲା ନାହିଁ ।

---

ଶେଷ ଭାଗ

# —ବଡ଼ଶୀ—

ବିବାହପରେ ଜମ୍ମୁ ଓ ଚମ୍ପା ପଦ୍ମଲୋଚନ ଡାକ୍ତରଙ୍କ ଘରେ ରହିବା ପରେ ମାଷ୍ଟର ସେ ଦୁହିଙ୍କୁ ସର୍କଶ ନଗରକୁ ନେଇଗଲେ । ସେଦିନ ସର୍କଶ ନଗର ବିପୁଳ ସାଜସଜ୍ଜାରେ ସଜ୍ଜିତ ହୋଇଥିଲା ଏବଂ ବହୁବିଧ ଅନେକ ମାଳା ଓ ଅତସ ବାଜିରେ ଦଶ ଦିଗ ଝଲକି ଉଠୁଥିଲା । ଦ୍ୱିପ୍ରହରୁ ପର୍ଯ୍ୟନ୍ତ ବହୁତ ଖେଳ, ଗାର୍ଡ଼ନ୍ ପାର୍ଟୀ, ଡିନର୍, କାଙ୍ଗାଳ ଭୋଜନ, ନାଚତାମସା ଓ ମଜ୍‌ଲିସ୍ ଲାଗିରହିଲା । ଏ ସାତ ଦିନ ଲୋକେ ବିନାଫିସ୍‌ରେ ସର୍କଶ ଦେଖିଲେ । ମାଷ୍ଟର ନିଜ ପ୍ରାଣର କନ୍ୟା ଚମ୍ପକସୁନ୍ଦରୀର ବିବାହୋତ୍ସବରେ ହଜାର ହଜାର ଟଙ୍କା ଢାଳିଦେଲେ । ଜମ୍ମୁ ଓ ଚମ୍ପା ଏହି ବିରାଟ ଉତ୍ସବର ବିପୁଳ ମାଦକତା ବୃଦ୍ଧି କରୁଥିଲେ । ଲୋକେ ସେ ଦୁହିଙ୍କ ବ୍ୟକ୍ତି-ତ୍ୱରେ ଏତେ ମୁଗ୍ଧ ହୋଇଗଲେ ଯେ ଜମ୍ମୁ ଓ ଚମ୍ପା ବାସ୍ତବିକ ଉପଯୁକ୍ତ ପାତ୍ର ବୋଲି ଶତ ମୁଖରେ ସ୍ୱୀକାର କଲେ ।

ଉତ୍ସବ ଶେଷରେ ମାଷ୍ଟର ଜମ୍ମୁର ଶିକ୍ଷା ପାଇଁ ବଡ଼ ବଡ଼ ଶିକ୍ଷକମାନଙ୍କୁ ନିଯୁକ୍ତ କଲେ । ତାର ସ୍ମରଣ ଶକ୍ତି ଅସାଧାରଣ ଥିବାରୁ ସେ ଅଳ୍ପକାଳ ମଧ୍ୟରେ ସମସ୍ତ ସ୍କୁଲ ପାଠ୍ୟ ଶେଷ କରି କଲେଜ ପାଠ୍ୟମାନ ପଢ଼ିଲା ଏବଂ ତହିଁରେ ଅଶାତୀତ ଭାବରେ ଉତ୍ତୀର୍ଣ୍ଣ ହୋଇ ବର୍ଷ କେତୋଟା ଭିତରେ ଏମ୍, ଏ, ପଢ଼ା ଶେଷ କଲା ।

ପଢ଼ା ସଙ୍ଗେ ସଙ୍ଗେ ଜମ୍ବୁ କୁସ୍ତି କସରତ୍ ଓ ମାଲ ବ୍ୟାୟାମ ନିୟମିତ ରୂପେ ଅଭ୍ୟାସ କରୁଥିଲା । ସେ ପଶୁ ସମାଜରେ ଗୋଟାଏ ବଳିଷ୍ଠ ମାଲଥିଲା, ସେହି ବଳରେ ସିଂହ ବ୍ୟାଘ୍ରାଦି ପଶୁମାନଙ୍କୁ ନିଜର ଅଙ୍ଗୁଠି ଅଗରେ ରଖିଥିଲା । ବର୍ତ୍ତମାନ ସେ ସେହି ଶକ୍ତି ଧରି କୁସ୍ତି କସରତ୍‌ର ସମସ୍ତ ନିୟମ ପାଳନକରି ମନୁଷ୍ୟ ସମାଜରେ ଗୋଟାଏ ଅଲୌକିକ ମାଲ ବନିଗଲା । ଆହାର ବିହାର, ଶୋଇବା ଉଠିବା ଓ ଅନ୍ୟାନ୍ୟ ବୈଷୟିକ କାର୍ଯ୍ୟମାନ-ଙ୍କରେ ସେ ଏତେ ସଂଯତ ହେଉଥିଲା ଯେ ଲୋକେ ତାହା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ରମ୍ଭା ପରି ପରମା ସୁନ୍ଦରୀ ସ୍ତ୍ରୀ ପାଖେ ପାଖେ, ନିଜର ଅଲୌକିକ ରୂପ ଯୌବନ ଓ ବିପୁଳ ଧନରାଶି ହାତ ମୁଠାରେ ଥାଇ ଲୋକ ସଂଯମ ଅବଲମ୍ବନ କରିବା କେତେ କଠିନ ତାହା ସହଜରେ ଅନୁମାନ କରିଯାଇ ପାରେ । ମାତ୍ର ସେ ଶାରୀରିକ ଓ ମାନସିକ ବଳ ନିଖୁଣ ଭାବରେ ରଖି ପାରିଥିଲା । ଲୋକ ଯେବେ ସବୁ ବିଷୟରେ ସଂଯମ ରକ୍ଷା କରିପାରେ, ତେବେ ତାର କୌଣସି କଥା ଅସାଧ୍ୟ ନୁହେଁ । ଏହାର ଏକମାତ୍ର ଆଦର୍ଶ ହୋଇ ଉଠିଲା ଜମ୍ବୁ । ସେ ନିଜର ସ୍ୱଭାବ ଓ ଚରିତ୍ର ବଳରେ ସର୍ବ ସାଧାରଣଙ୍କୁ ଆପଣାର କରି ପକାଇଲା । ମାଷ୍ଟର, ଚମ୍ପା, ସର୍କସ କର୍ମୀମାନେ ଓ ଅନ୍ୟାନ୍ୟ ଗୃହର ଚାକରମାନେ ଖୁବ୍ କମ୍ ସମୟ ଭିତରେ ତାର ଏକାନ୍ତ ବଶୀଭୂତ ହୋଇଗଲେ ।

---

ଶେଷ ଉକ୍ତ

## —କେତଣୀ—

ଜମ୍ବୁ ସର୍କସରେ ବିବିଧ କୁସ୍ତି କସରତ୍ ଦେଖାଇ ଲୋକଙ୍କୁ ଚମତ୍କୃତ କରି ଦେଉଥିଲା । ତା ସର୍କସ ଦେଖିବାକୁ ବହୁତ ଲୋକ ଆସୁଥିଲେ, ଶତ ଶତ ଟଙ୍କା ଏଥିପାଇଁ ସର୍କସର ଲାଭ ହେଉଥିଲା । ଜମ୍ବୁ ସାଧାରଣରେ ବଡ଼ ଲୋକପ୍ରିୟ ହୋଇ ପଡ଼ିଲା । ସେ ସର୍କସକୁ ସମସ୍ତେ ଜମ୍ବୁ ସର୍କସ ବୋଲି କହିବାକୁ ଲାଗିଲେ । କ୍ରମେ କ୍ରମେ ଏକୁନାଥ ଗୁରୁଅତେ ପ୍ରବ୍ରଜିତ ହେଲେ । ଜମ୍ବୁ ସର୍କସର ସମସ୍ତ ଭାର ନେଇ ଏପରି ଭାବରେ ତାକୁ ଚଳାଇଲା ଯେ ଅଳ୍ପକାଳ ମଧ୍ୟରେ ସେ ସର୍କସ ଭାରତ ବିଖ୍ୟାତ ହୋଇଗଲା । ମାତ୍ର ଅନ୍ୟ ସର୍କସର କୌଣସି ଭାର ମୁଣ୍ଡାଇଲେ ନାହିଁ । ଜମ୍ବୁ ସେ ସର୍କସକୁ ନାଗପୁର ଅଡରେ ଅବଶ୍ୟ କରି ନ ରଖି ଏଣିକି କ୍ରମେ କ୍ରମେ ଦିଲ୍ଲୀ, କଲିକତା ମାନ୍ଦ୍ରାଜ, ବୋମ୍ବାଇ, କରାଚି, କାନ୍ଦାହାର ପ୍ରଭୃତି ଭାରତର ବଡ଼ ବଡ଼ ସହରମାନଙ୍କରେ ନେଇ ପ୍ରଦର୍ଶନୀ ଦେଖାଇଲା । ଜମ୍ବୁ ସର୍କସ ଏତେ ଲୋକପ୍ରିୟ ହୋଇ ଉଠିଲା ଯେ, ତହିଁରୁ ହଜାର ହଜାର ଟଙ୍କା ପ୍ରତ୍ୟହ ଲାଭ ହେଲା । ତା ସଙ୍ଗେ ସଙ୍ଗେ ଜମ୍ବୁର ସମ୍ମାନ ବହୁତ ବୃଦ୍ଧି ପାଇଲା । ଭାରତର ରାଜା ମହାରାଜାମାନେ ଜମ୍ବୁ ସର୍କସକୁ ବହୁତ ଆଦର କଲେ । ଲାଟ୍, ବଡ଼ ଲାଟ୍ମାନେ ମଧ୍ୟ ସେ ସର୍କସ ଦେଖିବାକୁ ଅନେକ ସମୟରେ ଯାଉଥିଲେ ।

# ଜମ୍ବୁ

କାଳ କ୍ରମେ ଜମ୍ବୁ ଆଉ ସର୍କଶକୁ ଭାରତ ଭିତରେ ଅବଦ୍ଧ-ରଖିପାରିଲେ ନାହିଁ । ଭାରତ ବାହାରେ ବର୍ମା, ଚୀନ, ଶ୍ୟାମ, ଜାପାନ, ଅଷ୍ଟ୍ରେଲିଆ, ଆମେରିକା, ଇଉରୋପ ଓ ଆଫ୍ରିକାର ବଡ଼ ବଡ଼ ସହରମାନଙ୍କରୁ ନିମନ୍ତ୍ରଣପାଇ ସେ ସବୁ ସ୍ଥାନକୁ ତାର ସର୍କଶ ନେଲା । ସେଠାରେ ନାଚର, ନିଜ କର୍ମଚାରୀମାନଙ୍କର ଓ ପଶୁମାନଙ୍କର ଅଲୌକିକ ସର୍କଶ ଦେଖାଇ ସମସ୍ତଙ୍କୁ ମୁଗ୍ଧ କରି ଦେଲା । ଭାରତ ବାହାରେ ଜମ୍ବୁ ସର୍କଶର ବହୁତ ସୁନାମ ବଢ଼ିଲା । ଗୋଟାଏ ଗୋଟାଏ ସହରରେ ମାସାଧିକ କାଳ ସର୍କଶ ଦେଖା ହେଲେ ମଧ୍ୟ ଲୋକେ ତାକୁ ତାଙ୍କ ସହରରୁ ସହଜରେ ଛାଡ଼ି ଦେବାକୁ ରାଜି ହେଉ ନ ଥିଲେ ।

ଜମ୍ବୁ ଦଶବର୍ଷ କାଳ ଭାରତ ବାହାରେ ପ୍ରତି ମହାଦେଶରେ ସର୍କଶ ଦେଖାଇ ଅନେକ ଅର୍ଥ ଉପାର୍ଜନ କଲା ଏବଂ ସେ ସବୁ ସ୍ଥାନରେ ରାଜାପରି ଗର୍ବ କରି ବିସ୍ତର ଦାନ ଖଇରାତ କରି ଯଥେଷ୍ଟ ବହୁତ ସୁନାମ ଅର୍ଜନ କଲା । ଏ ମଧ୍ୟରେ ତାର ଦୁଇଟି ପୁଅ ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ସେମାନଙ୍କୁ ଦେଖି ଲୋକେ ଦେବ ଶିଶୁପରି ମନେ କରୁଥିଲେ ଏବଂ ସେ ଶିଶୁମାନଙ୍କୁ ବଡ଼ ବଡ଼ ଲୋକମାନେ ଅନେକ ଉପହାର ଦେଉଥିଲେ । ଜମ୍ବୁ ଓ ଚମ୍ପା ଏକପ୍ରାଣ ହୋଇ ଗୋଟିଏ ବୃନ୍ତରେ ଦୁଇଟି ଫୁଲ ପରି ଶୋଭା ପାଉଥିଲେ । ଚମ୍ପାର ସସ୍ନେହ ବ୍ୟବହାରରେ ସର୍କଶ କର୍ମଚାରୀମାନେ ବଡ଼ ମୁଗ୍ଧ ହୋଇ ସେମାନଙ୍କ ନିକଟରେ ବଶୀଭୂତ ହୋଇ ରହୁଥିଲେ; ତେଣୁ ସର୍କଶର ସୁନାମ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଅର୍ଥିକ ଉନ୍ନତି ଅଲୌକିକ ରୂପେ ବଢ଼ିଲା ।

## ଜିମ୍ବ

ଜମ୍ବୁ ଦଶବର୍ଷକାଳ ମହାଦେଶମାନଙ୍କରେ ସର୍କଶ ଦେଖାଇ ଭାରତକୁ ବାହୁଡ଼ି ଆସିଲା । ସେ ସଦ୍‌ଭାବରେ ଖୁବ୍ ସମ୍ମାନରେ ରହିବା ପାଇଁ ମାଷ୍ଟର ବମ୍ବେଇ ସହର ନିକଟ ସମୁଦ୍ର କୂଳରେ ଗୋଟାଏ ବସନ୍ତ ପ୍ରାସାଦ ତା ପାଇଁ ନିର୍ମାଣ କରିଥିଲେ । ଜମ୍ବୁ ଫେରି ଆସି ସେହି ପ୍ରାସାଦରେ ରହିଲା ଏବଂ ବମ୍ବେଇ ସହରରେ ସ୍ଥାୟୀ ସର୍କଶଘର ତିଆରି କରି ସେଠାରେ ପ୍ରତ୍ୟହ ସର୍କଶ ଦେଖାଇଲା । ଜମ୍ବୁ ସର୍କଶ ଦେଖିବାକୁ ଭାରତର ବୃଦ୍ଧଅବୃଦ୍ଧ ଲୋକେ ଠାଣି ହୋଇ ଯାଉଥିଲେ ।

———

## —ଟଉଚରଣୀ—

ଜମ୍ମୁ ବମ୍ବେ ପ୍ରାସାଦଅର ନାଗପୁର ସହର ଉତରେ ଗୋଟାଏ ପ୍ରକାଣ୍ଡ ପ୍ରାସାଦ ନିର୍ମାଣ କଲେ । ସେ ବର୍ଷର ଛଅମାସ ସେଠାରେ ଓ ଛଅମାସ ବମ୍ବେଠାରେ ରହୁଥିଲେ । ବମ୍ବେର ପ୍ରାସାଦରେ ପିତାଙ୍କୁ ପରମଭକ୍ତି ସହକାରେ ପୂଜା କରୁଥିଲେ ଏବଂ ତାଙ୍କ ସନ୍ତୋଷ ପାଇଁ ମଠ ପଡ଼ୀ ନିଜର ଘୋଟକ ତାଲି ଦେଉଥିଲେ । ମାସ୍ଟର ନାଥ ତାତୁଣୀ ତନୋଟିକି ପାଇ ସଂସାରର ସବୁ କଥା ଭୁଲିଗଲେ ଏବଂ ନିଜ ସ୍ତ୍ରୀ ବିୟୋଗର ଦାରୁଣ ଦୁଃଖ ଏ ଟନୋଟିଙ୍କ ମୁହଁକୁ ଚାହିଁ ପାଶୋରି ଦେଇଥିଲେ ।

ଜାକ୍ରବଙ୍କର ଗୋଟିଏ ସ୍ତ୍ରୀ ଓ ଗୋଟିଏ ମାତ୍ର ପୁତ୍ର ଥିଲେ । ଜମ୍ମୁ ସେମାନଙ୍କୁ ଅତି ନିଜ ନାଗପୁର ପ୍ରାସାଦରେ ରଖିଲ ଏବଂ ସେ ବୃଦ୍ଧ ପିତାମାତାଙ୍କୁ ହୃଦୟର ସମସ୍ତ ଭକ୍ତି ଦେଇ ପୂଜା କଲେ । ଜାକ୍ରବଙ୍କ ପୁଅ ଅମିତାଭଙ୍କୁ ସେ ବିଜ୍ଞାନ ଶିକ୍ଷା ପାଇଁ ଆମେରିକା ପଠାଇଦେଲେ । ଅମିତାଭ ପାଞ୍ଚ ବର୍ଷ କାଳ ସେ ଦେଶର ସମସ୍ତ ବିଜ୍ଞାନରେ ପାରଦର୍ଶୀ ହୋଇ ଯେତେବେଳେ ଭାରତକୁ ଫେରି ଆସିଲେ, ଭାରତ ସରକାର ତାଙ୍କୁ ବହୁତ ଆଦର କଲେ ଏବଂ ନାଗପୁର ସହରରେ ବିଜ୍ଞାନ ଶିକ୍ଷାର କେନ୍ଦ୍ର ସ୍ଥାପନ କରି ତହିଁରେ ତାଙ୍କୁ ପରିଚାଳକ କରିଦେଲେ । ତାଙ୍କ ଶିକ୍ଷାରେ ଜମ୍ମୁର ପ୍ରାୟ ଅଶୀ-

ଶହେ ଅଠର

ହଜାର ଟଙ୍କା ବ୍ୟୟ ହୋଇଥିଲା । ତାଙ୍କର ଅଧିକାର ସରକାରଙ୍କ ସାହାଯ୍ୟ ପାଇ ନିଜ ପଢ଼ାଇ ସ୍କୁଲ ମନ୍ଦରର ଦଶଗୁଣ ଉନ୍ନତ କଲେ । ଅଳ୍ପ ଦିନ ଭିତରେ ତାଙ୍କ ସୁନାମ ବହୁତ ବଢ଼ିଗଲା । ବୃଦ୍ଧଦମ୍ପତିଙ୍କ ଅନାବିଳ 'ଆଶିଷରାଶି' ଜମ୍ମୁ ଉପରେ ନିରନ୍ତର ପଡ଼ୁଥିଲା । କାଳକ୍ରମେ ମାଷ୍ଟର ଓ ଡାକ୍ତରଦମ୍ପତି କାଳର କବଳିତ ହେଲେ । ଜମ୍ମୁ ସେମାନଙ୍କର ଶ୍ରାଦ୍ଧ ଯେପରି ଉଦାର ଭାବରେ କରିଥିଲା, ତାହା ଅନେକ ରାଜା ମହାରାଜା ସେତେବେଳେ ଅନୁକରଣ କରିଥିଲେ । ସେଥିପାଇଁ ଜମ୍ମୁର ପ୍ରଶଂସା ଦେଶ-ଦେଶାନ୍ତରରେ ବ୍ୟାପି ଯାଇଥିଲା ।

ଜମ୍ମୁ ନାଗପୁର ପ୍ରାସାଦରେ ଅବସ୍ଥାନ କରୁଥିଲା ବେଳେ ନିଜର ପ୍ରିୟ ମହାବଣକୁ ବୁଲିଯାଇ ବର୍ଷରେ ମାସାଧିକ କାଳ କଟାଇ ଦେଉଥିଲା । ସେ ସମୟରେ ସେ ମହାବଣର ସମୁଦାୟ ଅଂଶ ବୁଲି ଶିକାର କରି ପରମ ଆନନ୍ଦ ଲାଭ କରୁଥିଲା । ସେ ବଣରୁ ସମସ୍ତ ଭୟ ଦୂର କରି ଲୋକେ ଯେପରି ନିରାପଦରେ ତା ଭିତରେ ଯାତାୟାତ କରିପାରିବେ ତାର ବ୍ୟବସ୍ଥା କରିବାକୁ ସରକାର ଜମ୍ମୁ ଉପରେ ଭାର ଦେଇଥିଲେ । ଜମ୍ମୁକୁ ବଣର ସମୁଦାୟ ଅଂଶ ମାଲୁମ ଥିଲା; ତେଣୁ ସେ ସମସ୍ତ ପ୍ରଜାଙ୍କର ସୁବିଧା ଅସୁବିଧା ପ୍ରତି ଲକ୍ଷ୍ୟ କରି ବଣରେ ପୂର୍ବରୁ ପଶ୍ଚିମକୁ ଗୋଟାଏ ଓ ଉତ୍ତରରୁ ଦକ୍ଷିଣକୁ ଗୋଟାଏ ଏପରି ଦୁଇ ଗୋଟା ବଡ଼ ବଡ଼ ସଡ଼କ ନିର୍ମାଣ କଲା । ସେ ସଡ଼କରେ ପ୍ରତି ଦଶମାଇଲରେ ଚଟିଘର ନିର୍ମିତ ହେଲା । ପ୍ରତି ଚଟିଘର ନିକଟରେ ଗୋଟିଏ ଲେଖାଏଁ ଲୋକବସତି ସ୍ଥାପିତ

ହେଲା । ସେ ଲୋକମାନେ କୃଷି କାର୍ଯ୍ୟ କରି ରହିବାକୁ ବିସ୍ତୃତ ଜଙ୍ଗଲ କଟାଯାଇ ସେମାନଙ୍କ ପାଇଁ ଜମି ତିଆରି କରି ଦିଆଗଲା । ଲୋକ-ମାନେ ସେ ବସ୍ତିମାନଙ୍କରେ ଶତ ଶତ ସଂଖ୍ୟାରେ ଆସି ରହିଲେ । ବାସ୍ତୋଇମାନଙ୍କ ରହିବା ସୁବିଧା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ଖାଇବା ସୁବିଧା ହେବାପାଇଁ ଗୋଟିଏ ଗୋଟିଏ ଭଣ୍ଡାର ପ୍ରତି ବସ୍ତି ଘର ନିକଟରେ ରହିଲା । ବାସ୍ତୋଇମାନେ ସେ ଘରମାନଙ୍କରେ ନିଶ୍ଚିନ୍ତରେ ରହି ଜମ୍ମୁର ପ୍ରଶଂସା ଶତମୁଖରେ କରିବାକୁ ଲାଗିଲେ ଏହା ଛଡ଼ା ମହାବଣ ଭିତରେ ବହୁତ ବଡ଼ ବଡ଼ ଗ୍ରାମ ସ୍ଥାପିତ ହେଲା । ପ୍ରତି ଗ୍ରାମରେ ଶହେରୁ ପାଞ୍ଚଶହ ପର୍ଯ୍ୟନ୍ତ ଲୋକ ବସବାସ କରି ରହିଲେ । ବିସ୍ତୃତ ଜଙ୍ଗଲ କଟାଯାଇ ସେମାନଙ୍କ ପାଇଁ ପ୍ରଚୁର ପରିମାଣରେ ଜମିବାଡ଼ି ତିଆରି କରି ଦିଆଗଲା । ଜମ୍ମୁର ଅଦମ୍ୟ ଚେଷ୍ଟା ଓ ସରକାରଙ୍କ ଉଦ୍ୟମରେ ଦଶ ବର୍ଷ ଭିତରେ ମହାବଣ ଭିତରେ ତିନିଶହ ଗ୍ରାମ ବସିଗଲା; ଏଣୁ ବନ୍ୟଜନ୍ତୁମାନଙ୍କ ଉପଦ୍ରବ ବହୁ ପରିମାଣରେ କମିଗଲା । ସେ ଅଞ୍ଚଳ ଏବେ ଶସ୍ୟଶ୍ୟାମଳ କୃଷି କ୍ଷେତ୍ରରେ ପରିଣତ ହୋଇ ନାଗପୁର ସରକାରଙ୍କର ଗୋଟିଏ ସବ-ଡିଭିଜନ ହୋଇଅଛି । ସେ ମହାବଣର ଆଉ ନାମ ନାହିଁ । ଖଣ୍ଡେ ଖଣ୍ଡେ ଛୁଣ୍ଡା ଜଙ୍ଗଲ ସ୍ଥାନେ ସ୍ଥାନେ ରହି ବିଗତ ବଣର ସ୍ମୃତି ଲୋକଙ୍କ ମନରେ ଆଂଶିକ ଜାଗ୍ରତ କରୁଛି ।

ଏ ସବୁ ଲୋକହିତକର କାର୍ଯ୍ୟରେ ଜମ୍ମୁର ସମସ୍ତ ସମୟ, ଟଙ୍କା ବ୍ୟୟିତ ହେଉଥିଲା । ସେ ନିଃସ୍ୱାର୍ଥପର ଭାବରେ ତାହା ବ୍ୟୟ କରି ଅଳ୍ପଦିନ ଭିତରେ ଖୁବ୍ ଲୋକ ପ୍ରିୟ ହୋଇ ଉଠିଲା । ଲୋକେ ସ୍ଥାନେ ସ୍ଥାନେ ସମ୍ଭ୍ରମର ତାର ପ୍ରଶଂସା ଗାଇଲେ । ଜମ୍ମୁ ଯେଉଁ ସ୍ଥାନକୁ

ଯେତେବେଳେ ଯାହାଥିଲା ଲୋକେ ତା ପାଇଁ ବହୁତ ଅଭ୍ୟର୍ଥନା ସଙ୍ଗେ ତାର ନିଜର ସମସ୍ତ ସମ୍ମାନ ତା ଉପରେ ଢାଳି ଦେଉଥିଲେ । ସରକାର ମଧ୍ୟ ତା'ର ଏ ସମସ୍ତ ଲୋକହିତକର କାର୍ଯ୍ୟାବଳୀରେ ଏତେ ମୁଗ୍ଧ ହୋଇ ଯାଇଥିଲେ ଯେ ତାଙ୍କୁ ସମ୍ମାନ ଦେଖାଇବା ପାଇଁ ଉଚ୍ଚ ପଦବୀରେ ଭୂଷିତ କରିଥିଲେ ଏବଂ ଦରବାରରେ ତାଙ୍କୁ ମାନପତ୍ର ସହ ଅନେକ ମୂଲ୍ୟବାନ ଉପହାର ଉପହାର ଦେଇଥିଲେ । ଏ ଘଟଣାପରେ ଜମ୍ମୁର ସମ୍ମାନ ଗୁରୁଅନ୍ତେ ବ୍ୟକ୍ତିଙ୍କ । ସେ ନିରନ୍ତର ଦେଶହିତକର କାର୍ଯ୍ୟମାନଙ୍କରେ ମନପ୍ରାଣ ଢାଳିଦେଇ ଦେଶବାସୀଙ୍କର ତଥା ସରକାରଙ୍କର ଅଶେଷ ସମ୍ମାନ ଆଶୀର୍ବାଦ ଲାଭ କରୁଥିଲେ ।

---

ସମାପ୍ତ

---

କଟକ, ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ମୁଦ୍ରିତ

ଶହେ ଏକୋଇଶ

